# ଭାରତୀୟ ନାରୀ

( ସିରଜ )

ପ୍ରଥମ ଭାଗ

ଲେଖକ

ପ୍ରଶାନ୍ତ କୁମାର ମଲ୍ଲ

ପ୍ରଥମ ସଂସ୍କରଣ

୧୯୮୩

ପ୍ରକାଶକ

ଡାଇମଣ୍ଡ ପବ୍ଲିଶର୍ସ

ତେଲେଙ୍ଗା ବଜାର, କଟକ—୨

ପ୍ରାପ୍ତିସ୍ଥାନ—କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, କଟକ—୨

ମୂଲ୍ୟ—ଟ ୨-୨୫ ଦୁଇ ଟଙ୍କା ପଚିଶ ପଇସା

# ସୂଚୀପତ୍ର



—:o:—


ମୁଦ୍ରାକର—ହରେକୃଷ୍ଣ ବେହେରା

ମହାଲକ୍ଷ୍ମୀ ପ୍ରେସ, ସାହେବଜାଦା ବଜାର, କଟକ-୨

## ପ୍ରଥମ ଭାଗ

# ରାଣୀ ଶୁକ ଦେଈ

ବର୍ତ୍ତମାନ ଆମ ଦେଶର ରମଣୀମାନଙ୍କର ଶୋଚନୀୟ ଦଶା ଦେଖିଲେ କିଏ ବିଶ୍ୱାସ କରିବ ଯେ ପୂର୍ବେ ଏ ଦେଶରେ ବୀରରମଣୀମାନେ ଥିଲେ ? କିନ୍ତୁ ଏହା କଳ୍ପନାର କଥା ନୁହେଁ, ଆଜକୁ ପ୍ରାୟ ଦୁଇ ଶହ ବର୍ଷ ପୂର୍ବର ସତ୍ୟ ଘଟଣା । ଏଥିରୁ ଜଣାଯିବ ଏହି ଉତ୍କଳଭୂମି ଗର୍ଭରୁ କିପରି ବୀରାଙ୍ଗନା ଜନ୍ମ ଗ୍ରହଣ କରିଥିଲେ । ଯେଉଁ ବାଙ୍କି ବର୍ତ୍ତମାନ ଏକ ସବ୍‌ଡିଭିଜନ ତାହା ପୂର୍ବେ ଗୋଟିଏ କ୍ଷୁଦ୍ର ରାଜ୍ୟ ଥିଲା । ସେହି ରାଜ୍ୟର ରାଜାମାନେ ଅତ୍ୟନ୍ତ ବୀରପୁରୁଷ ଥିଲେ । ବଡ଼ ରାଜା ନ ହେଲେ କଣ ହେବ ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କର ରାଜାମାନେ ତାହାଙ୍କୁ ପ୍ରାଣରେ ଡରି ଚଳୁଥିଲେ । ରାଜପୁତ ରାଜ୍ୟରେ ଚିତୋରଗଡ଼ ପରି ଓଡ଼ିଶାରେ ବାଙ୍କିର ସୁଖ୍ୟାତି ଥିଲା । ଏହି ବଂଶର ରାଜା ଧନୁର୍ଜୟ ଶ୍ରୀଚନ୍ଦନ ମହାପାତ୍ର ଖ୍ରୀଷ୍ଟାବ୍ଦ ୧୭୦୦ ରୁ ୧୭୧୫ ପର୍ଯ୍ୟନ୍ତ ପ୍ରାୟ ୧୫ ବର୍ଷକାଳ ରାଜତ୍ୱ କରିଥିଲେ । ଧନୁର୍ଜୟ ମଧ୍ୟ ଜଣେ ବୀରପୁରୁଷ ଏବଂ ପ୍ରତାପଶାଳୀ ରାଜା ଥିଲେ, କିନ୍ତୁ ତାଙ୍କର ବୃଦ୍ଧାବସ୍ଥା ଉପସ୍ଥିତ ହେବା ସମୟରେ କୌଣସି କାରଣବଶତଃ ଖୋର୍ଦ୍ଧାର ତତ୍କାଳୀନ ରାଜାଙ୍କ ସହିତ ମନୋମାଳିନ୍ୟ ଘଟିବାରୁ ଉଭୟଙ୍କ ମଧ୍ୟରେ ଯୁଦ୍ଧ ଘୋଷଣା ହେଲା । ଖୋର୍ଦ୍ଧାର ଅଧିପତି ଆପଣାକୁ ଅଧିକ ବଳଶାଳୀ ଜାଣି ବହୁ ସୈନ୍ୟ ସେନା ହଠାତ୍ ଆସି ବାଙ୍କି ଆକ୍ରମଣ କଲେ । ବାଙ୍କି ରାଜା ବୀର ଧନୁର୍ଜୟ ସେଥିରେ କିଞ୍ଚିନ୍ମାତ୍ର

ଭୀତ ନ ହୋଇ ଅଳ୍ପସଂଖ୍ୟକ ସୈନ୍ୟ ନେଇ ବିପକ୍ଷଦଳ ଅଭିମୁଖରେ ଧାବିତ ହେଲେ । ଦୁଇରାଜ୍ୟର ସୀମା ସ୍ଥଳରେ ଘୋର ଯୁଦ୍ଧହେଲା । ଶେଷକୁ ବୃଦ୍ଧ ଧନୁର୍ଜୟ ଆଉ ସମ୍ଭାଳି ନ ପାରି ପୃଷ୍ଠଭଙ୍ଗ ଦେବାକୁ ବସିଲେ । ତାଙ୍କର ପଛକୁ ହଟିବା ସଙ୍ଗେ ସଙ୍ଗେ ବିପକ୍ଷ ଦଳ ଦ୍ୱିଗୁଣ ବିକ୍ରମରେ ମାଡ଼ି ଆସିଲେ । ବାଙ୍କିଗଡ଼ର ନିକଟସ୍ଥ ଭଗଡ଼ ଗ୍ରାମରେ ପୁନର୍ବାର ତୁମୁଳ ଯୁଦ୍ଧ ହେଲା । ଏହି ଯୁଦ୍ଧରେ ବାଙ୍କି ନରେଶ୍ୱର ପ୍ରାଣ ବିସର୍ଜନ କଲେ । ଶତ୍ରୁର ତୀକ୍ଷ୍ଣ ଖଣ୍ଡାଘାତରେ ଅଧୀଶ୍ୱର ବୀରମସ୍ତକ ଭୂଲୁଣ୍ଠିତ ହେଲା । ଏହି ବିକ୍ରମୀ ସମସ୍ତଙ୍କୁ ସୂର୍ଯ୍ୟ ପଶ୍ଚିମ ଦିଗ୍‌ବଳୟରେ ଚକ୍ରମସ୍ତୁ ହେଉଥିଲେ । ଖୋର୍ଦ୍ଧାରାଜା ବିଜୟ ମଦରେ ସେତେବେଳେ ବାଙ୍କି ଗଡ଼ରେ ପ୍ରବେଶ କରିବାକୁ ମନାସି ଥିଲେ । କିନ୍ତୁ ଏପରି ଅସମୟରେ ଘୋର ଅରଣ୍ୟ ପରିପୂର୍ଣ୍ଣ ନଦୀ ପରିଖା ପରିବେଷ୍ଟିତ ଦୁର୍ଗମ ବାଙ୍କି ଗଡ଼ରେ ପ୍ରବେଶ କରିବାକୁ ରାଜାଙ୍କ ସୈନ୍ୟ ସାମନ୍ତମାନେ ସାହସୀ ହେଲେ ନାହିଁ । ଅଗତ୍ୟା ସେମାନଙ୍କୁ ଗୋପାଳପୁର ନିକଟରେ ଶିବିର ସ୍ଥାପନ କରି ସେଠାରେ ସେ ରାତି ରହିବାକୁ ପଡ଼ିଲା ।

ରାତି ପ୍ରବେଶ ସଙ୍ଗେ ସଙ୍ଗେ ଏ ଘୋର ଦୁଃସନ୍ଦେଶ ବାଙ୍କି ରାଜପୁର ମଧ୍ୟରେ ପ୍ରବେଶ କଲା । ଅନ୍ତଃପୁର ରମଣୀମାନଙ୍କର ହୃଦୟ ବିଦାରକ କ୍ରନ୍ଦନ ବିଳାପ ଧ୍ୱନିରେ ଚତୁର୍ଦ୍ଦିଗ ପୂର୍ଣ୍ଣ ହୋଇଗଲା । ପୁରବାସୀମାନେ ଆର୍ତ୍ତ ହାହାକାର କରିବାକୁ ଲାଗିଲେ । ହତପ୍ରାଣା ରାଣୀ ଶୁକ୍ଳ ଦେଈଙ୍କର ଏକାକାର ଅବସ୍ଥା ବର୍ଣ୍ଣନାତୀତ । ମାତ୍ର ସେ ସାମାନ୍ୟ ରମଣୀ ନୁହନ୍ତି—ବୀର ଧନୁର୍ଜୟଙ୍କର ଉପଯୁକ୍ତ ସହଧର୍ମିଣୀ ବୀରାଙ୍ଗନା । ତେଣୁ ସେ ଅନ୍ୟ ରାଣୀଙ୍କପରି ଶୋକରେ ଅଧୀର ହୋଇ ନ ପଡ଼ି ବିଚାର କରି ଦେଖିଲେ ଯେ, ଏ ଶୋକର ସମୟ ନୁହେଁ ଦାରୁଣ ପରୀକ୍ଷାର ଆଜି କଠୋର କର୍ତ୍ତବ୍ୟ ପାଳନର

ସମସ୍ତ । ନିକଟରେ ଶତ୍ରୁପକ୍ଷ ଜଗି ରହିଛନ୍ତି । ରାତି ନ ପାହୁଣୁ ଆସି ଏ ପୁର ଗ୍ରାସ କରି ପକାଇବେ । ଏତେବେଳେ ଯୁଦ୍ଧ ନ କରି ଆଉ ରକ୍ଷା ନାହିଁ । ମଧ୍ୟ ମଧ୍ୟରେ ଏହିପରି ଆଲୋଚନା କରି ଶୋକାକୁଳା ଶୁକଦେଈ ଆପେ ଶୋକଜ୍ୱାଳା ସମ୍ଭାଳି ନେଇ ସେହି କାଳ ରାତିରେ ବାଳକ ପୁତ୍ର ସହିତ ଯୁଦ୍ଧ ଲାଗି ସଜ ହେଲେ । ଏହି ସମୟରେ ମନ୍ତ୍ରୀ ବୃଦ୍ଧ ବେବର୍ତ୍ତୀ ପଟ୍ଟନାୟକେ ଆସି ରାଣୀଙ୍କ ଛାମୁରେ ଜଣାଇଲେ—"ମଣିମା, ଆଜ କ ଦାରୁଣ ବାର୍ତ୍ତା ଛାମୁରେ ଜଣାଇବା ପାଇଁ ମୋହର ପ୍ରାଣ ରହିଅଛି ! ବାଙ୍କିର ଗୌରବ ରବି ଆଜ ଅସ୍ତମିତ । ଶତ୍ରୁପକ୍ଷ ଦଳ ଘୋର କୋଳାହଳ କରି ସମ୍ମୁଖରେ ବାଙ୍କି ଗ୍ରାସ କରିବାକୁ ଅଗ୍ରସର । ବର୍ତ୍ତମାନ ଶୋକର ବେଳ ନୁହେଁ । କ ଉପାୟ କରିବାକୁ ହେବ ବୁଦ୍ଧି ଦଶୁ ନାହିଁ । ମଣିମାଙ୍କର ଅନୁମତି ହେଲେ ରାଜ୍ୟରୁ କିଛି ଅଂଶ ଦେଇ ସନ୍ଧିସ୍ଥାପନ କରିବାକୁ ହେବ । ତାହାହେଲେ ଏ ବାଳକ ଗମ୍ଭୀର ସାମନ୍ତଙ୍କର ଲୋକ ଯାହାନବାହ ସକାଶେ କିଛି ରହିବ । ନ ହେଲେ ଅନ୍ୟ ଉପାୟ କିଛି ଦେଖୁନାହିଁ ।" ରାଣୀ ଏ ପ୍ରସ୍ତାବରେ ଅତ୍ୟନ୍ତ ମର୍ମ ବ୍ୟଥା ଅନୁଭବ କରି କହିଲେ, "ପଟ୍ଟନାୟକେ ! ଆପଣ ବୟୋବୃଦ୍ଧ ଆଉ ଅଧିକ କଣ କହିବି ! ମୁଁ ଯେତେ ନଷ୍ଟପ୍ରାପ୍ତ ହେଲେ ସୁଦ୍ଧା ପତିହନ୍ତା ନିକଟରେ ବଶ୍ୟତା ସ୍ୱୀକାର କରିବି ନାହିଁ । ମୁଁ ଅନୁରୋଧ କରୁଛି ଆଉ କାଳ ବିଳମ୍ବ ନ କରି ଯୁଦ୍ଧର ଆୟୋଜନ କରନ୍ତୁ ଏବଂ ଶତ୍ରୁ ରାଜାଙ୍କୁ ବାର୍ତ୍ତା ଦିଅନ୍ତୁ ଯେ କାଲି ପୁନର୍ବାର ଯୁଦ୍ଧ ହେବ ।"

ଖ୍ରୁଦ୍ଧ ପଟ୍ଟନାୟକେ ରାଣୀଙ୍କ ମୁଖରୁ ଏପରି ବୀରବାଣୀ ଶ୍ରବଣ କରି ଅସମ୍ଭବ ବୋଧରେ ପୁଣି ବୁଝାଇ କହିଲେ—"ମଣିମା, ଯୁଦ୍ଧ ଇଚ୍ଛା ପରିତ୍ୟାଗ କରନ୍ତୁ । ସନ୍ଧି ନ କଲେ କଣ ସେନ ଯୁଦ୍ଧ ବା କରିବେ । ଛାମୁରୁ ଅନୁମତି ହେଲେ ମୁଁ ଶୀଘ୍ର ସନ୍ଧି କରିବାର

ଚେଷ୍ଟା କରିବ । ଏପରି ସ୍ତ୍ରୀ ବୁଦ୍ଧି ମତେ ଭଲ ଲାଗୁ ନାହିଁ । ବୃଦ୍ଧର ଏହି ଅନୁରୋଧ ପ୍ରତି ଅବହେଳା କରନ୍ତୁ ନାହିଁ ।"

ଯାହାର ଅନ୍ତରରେ ସ୍ୱାଭିମାନ ପ୍ରଜ୍ୱଳିତ ହୋଇ ଉଠିଥିବ ଏବଂ ପ୍ରତି ଶିରାରେ କ୍ଷତ୍ରିୟ ବୀର ରକ୍ତ ପ୍ରବାହିତ ହେଉଥିବ, ସେ କଣ ଏପରି କାପୁରୁଷ କଥା ଶୁଣି ସ୍ଥିର ହୋଇ ରହିପାରନ୍ତେ ? ରାଣୀ ଏହା ଶ୍ରବଣରେ କ୍ରୋଧରେ ଅଧୀର ହୋଇ ଚକ୍ଷୁ ଆରକ୍ତ କରି କହିଲେ—"ପାପ ମୁଖ ଲୁଣ ଖାଇ ଖୁବ୍ ଗୁଣ ଗାଇଲ । ମୋତେ ଏ ରାଜ୍ୟରେ କେହି ନ ଚାହିଁଲେ, ନ ଚାହାନ୍ତୁ, କେହି ଯଦି ସାହାଯ୍ୟ ନ କରିବେ ନ କରନ୍ତୁ ମୁଁ ଏହି ବାଳକ ଦସ୍ୟୁମାନଙ୍କୁ ନେଇ ଯୁଦ୍ଧରେ ପଶି ପ୍ରାଣ ବିସର୍ଜନ କରିବି । ମୁଁ ଏପରି ଜୀବନ କଳଙ୍କିତ କରି ପାରିବି ନାହିଁ । ତୁମ୍ଭେ ଯାଅ ଆଜନ୍ମ ପୋଷିତ ଦେହ ରକ୍ଷାର ଉଦ୍‌ଯୋଗ କରିବ । ମୁଁ କ୍ଷତ୍ରିୟ କନ୍ୟା ଆଉ କ୍ଷତ୍ରିୟ ବଧୂ ଅଟେ । ମୁଁ ନିଜ କୂଳର ଯୋଗ୍ୟ କାର୍ଯ୍ୟ କରିବି । ଅବଶ୍ୟ ପ୍ରଭୁ ମୋର ସହାୟ ହେବେ । ଯେବେ ତୁମର ଅନୁଗ୍ରହ ହୁଏ । ତା ହେଲେ ମୋର ଏ ଅନୁରୋଧ ରକ୍ଷା କରି ଯୁଦ୍ଧ ସଜ୍ଜା କର ।"

ନାରୀର ଏପରି ବୀରତ୍ୱ ବର୍ଣ୍ଣନରେ ବୃଦ୍ଧ ସେନାପତିଙ୍କ ମନରେ ଭୟ ଏବଂ ଲଜ୍ଜା ଆସି ସଞ୍ଚାର ହେଲା । ସେ ତତ୍‌କ୍ଷଣାତ୍ ରାଣୀଙ୍କଠାରୁ ମେଲାଣି ନେଇ ସାରା ରାତି ପରିଶ୍ରମରେ କେତେ ଗୁଡ଼ିଏ ସୈନିକ ସଂଗ୍ରହ କରି ରାତି ଶେଷ ପ୍ରହରରେ ରାଣୀଙ୍କୁ ସେ ବାର୍ତ୍ତା ଜଣାଇଲେ । ରାଣୀ ତାହା ଶୁଣିବା ମାତ୍ରେ ସେନାପତିଙ୍କୁ ବହୁତ ଧନ୍ୟବାଦ ଦେଇ ଆନନ୍ଦରେ ଅଧୀର ହେଲେ । ପୂର୍ବ ଦିଗରେ ଅରୁଣୋଦୟ ନ ହେଉଣୁ ବୀର ରମଣୀ ଅଶ୍ୱଶାଳରୁ ଗୋଟିଏ ସୁଶିକ୍ଷିତ ଅଶ୍ୱ ଆଣାଇ ତାହା ପୃଷ୍ଠରେ ଆରୋହଣ ପୂର୍ବକ ଯୁଦ୍ଧ କ୍ଷେତ୍ରକୁ ଯାତ୍ରା

କଲେ । ଏ ଦୃଶ୍ୟ ସମସ୍ତଙ୍କର ଆଶ୍ଚର୍ଯ୍ୟ ସମ୍ପାଦନ କଲା । ଯେ ଅଜୟା ଏ ଅନ୍ତଃପୁର ମଧ୍ୟରେ ଅସୂର୍ଯ୍ୟଂପଶ୍ୟା ହୋଇଥିଲେ ; ସେ ପୁଣି ଆଜ ପୁର ବାହାରେ ସୈନ୍ୟ ମଣ୍ଡଳୀ ମଧ୍ୟରେ ଅଶ୍ୱ ପୃଷ୍ଠରେ ସମାସୀନା ? ପୁଷ୍ପପଟ୍ଟବାସ ଯାହାଙ୍କର ପରିଧେୟ ଥିଲା ତାଙ୍କର ଆଜ ଚର୍ମମୟ ବର୍ମ ପରିଧାନ । ବ୍ୟାଘ୍ର ଭଲ୍ଲୁକ ବା ଭୂତ ପିଶାଚଙ୍କ ନାମ ଶ୍ରବଣରେ ଯାହାଙ୍କର ହୃତ୍ପିଣ୍ଡ କମ୍ପୁଥିଲା, ସେ ଆଜ ଅସ୍ତ୍ର ଶସ୍ତ୍ର ପ୍ରହାରକୁ ଭୟ ନ କରି ଯୁଦ୍ଧରେ ସେନାପତି । ନାରୀକୁଳର କଳ ପରି ଶକ୍ତି ମନୁଷ୍ୟ ଦେହକୁ ଅଦ୍ଭୁତ ଭାବରେ ଆସେ ।

ରାଣୀ ଶୁକଦେବଙ୍କ ପ୍ରାଣାଧିକ ପୁତ୍ର ଦୟାନିଧିଙ୍କୁ ଜଣେ ବିଶ୍ୱସ୍ତ ଭୃତ୍ୟ ହସ୍ତରେ ସମର୍ପଣ କରି ପଦାତିକ ବୀରମାନଙ୍କ ମଧ୍ୟରେ ଉପସ୍ଥିତ ହୋଇ ଏହି ରୂପେ ସେମାନଙ୍କୁ ଉତ୍ତେଜିତ କରିବାକୁ ଲାଗିଲେ—"ତୁମ୍ଭେମାନେ ଆଜି ତୁମ୍ଭର ପୂର୍ବ ପୁରୁଷମାନେ ମୋହର ସ୍ୱାମୀ ଓ ତାହାଙ୍କ ପିତୃ ପିତାମହଙ୍କ ଅନ୍ନରେ ପାଳିତ । ଏହି ରାଜବଂଶର କୃପାରୁ ତୁମ୍ଭେମାନେ ବହୁକାଳରୁ ସୁଖ ଶାନ୍ତିରେ ଆଶ୍ରୟ ଲାଭ କରିଅଛ । ମୁଁ ଅଭାଗିନୀ ବର୍ତ୍ତମାନ ତୁମ୍ଭମାନଙ୍କର ଆଶ୍ରୟ ପ୍ରାର୍ଥନା କରୁଅଛି । ମୋ ପ୍ରତି ଦୟା ବହିବାକୁ କେହି କୁଣ୍ଠିତ ହେବ କି ? ମୁଁ ଅବଶ୍ୟ ମୋ ପାଇଁ କିମ୍ବା ଏ ବାଳକ ଦୟାନିଧି ପାଇଁ କହୁନାହିଁ । ତୁମ୍ଭ ପାଇଁ ତୁମ୍ଭମାନଙ୍କର ବାଙ୍କି ଗଡ଼ ପାଇଁ ମୁଁ ଯୁଦ୍ଧ କରିବାକୁ ବାହାରିଛି । ନୋହିଲେ ପ୍ରଭୁ ମୋର ଜନ୍ମ ଦେଇଛନ୍ତି ; କୌଣସି ପ୍ରକାରେ ଅନୁସନ୍ଧାନ ହୋଇ ପାରିବ । କେବଳ ଏତିକି—ଯେଉଁ ବାଙ୍କୀ ନିଜର ବାହୁ ବଳରେ ଅଜୟା ଏ ଅକ୍ଷୟ ଯଶ ସଞ୍ଚୟ କରି ଆସିଅଛି । ଆମ୍ଭମାନଙ୍କ ପରି ଭୀରୁ କାପୁରୁଷଙ୍କ ଆଳସ୍ୟରେ ଆଜ ତାହା ନିଃଶେଷ ହୋଇଯିବ କିପା ! ତୁମ୍ଭର ପୂର୍ବପୁରୁଷଙ୍କ ଯଶୋରାଶି ସ୍ମରଣକରି, ଇଷ୍ଟ ଦେବତାଙ୍କଠାରେ

ଶକ୍ତି ଭିକ୍ଷା କର ଏବଂ ହୃଦୟରୁ ଖିନ୍ନତା ଦୂର କର ଅପୂର୍ବ ସାହସ ବାନ୍ଧି ମୋ ସଙ୍ଗରେ ଯୁଦ୍ଧକୁ ବାହାର । ତୁମ୍ଭେମାନେ ସମସ୍ତେ ଜାଣ ଦିନେ ମରିବାକୁ ହେବ । କେହି ଏ ସଂସାରରେ ଅମର ନୁହନ୍ତି । ଆମ୍ଭେମାନେ ନିଶ୍ଚୟ ଯୁଦ୍ଧରେ ଜିଣିବା । ଯେବେ ଈଶ୍ୱର ନିର୍ଦ୍ଦୟ ହେବେ ଆଉ ଆମ୍ଭ ଦେହରୁ ଏ ଖିନ୍ନତା ଦୂର ନ ହେବ । ତଥାପି କୁଳର ମାନ ସମ୍ମାନ ଲାଗି ଶତ୍ରୁ ଆଗରେ ପ୍ରାଣ ହରାଇଲେ କ୍ଷତି ନାହିଁ । ବରଂ ତାହା କଲେ ସ୍ୱର୍ଗ ଲାଭ କରି ମର୍ତ୍ତ୍ୟରେ ଅମର ହେବା । ଅତଏବ ହେ ପ୍ରିୟ ସୈନିକ ମଣ୍ଡଳୀ ! ତୁଚ୍ଛ ପାଣି ଫୋଟକା ପରି ଏ ସାମାନ୍ୟ ଜୀବନ ଘେନି ଅମୂଲ୍ୟ ଯଶ-ଧନ ଲାଭରେ ଅରୁଚି କର ନାହିଁ । ଏ ମନୁଷ୍ୟ ଜୀବନରେ ଯଶଠାରୁ ଅଧିକ ଆଉ କ'ଣ ମିଳିବ ? ଅତଏବ ସେହି ଯଶକୁ ବଡ଼ କରି ମାନ ସମସ୍ତେ ସାହସ ବାନ୍ଧି ଉଠ, ପ୍ରାଣମୂର୍ଚ୍ଛି ଆଗୁଣ କାର୍ଯ୍ୟ ସାଧନ କରିଯାଅ । ଅବଶ୍ୟ ଜୟ ହେବ । ମୁଁ ଜଣେ ସାମାନ୍ୟ ଅବଳା ତୁମ୍ଭମାନଙ୍କର ଅଗ୍ରଗାମିନୀ ହେଉଅଛି ।”

ରାଣୀଙ୍କର ଏତାଦୃଶ ଉତ୍ତେଜନା ପୂର୍ଣ୍ଣ ବାକ୍ୟରେ ସୈନ୍ୟଗଣ ଜୟ ଆଶାରେ ଉତ୍ସାହିତ ହୋଇ ବୀରନାଦରେ ଅସ୍ତ୍ର ଶସ୍ତ୍ର ଗ୍ରହଣ ପୂର୍ବକ ଜୟ ଜୟ ନାଦରେ ଯୁଦ୍ଧ ଭୂମି ଆଡ଼କୁ ଅଗ୍ରସର ହେବାକୁ ଲାଗିଲେ । ଦିନ ପ୍ରହରକ ସମୟରେ ଉଭୟ ପକ୍ଷର ଭେଟ ହେଲା । ଖୋର୍ଦ୍ଧାର ହୋଇ ରାଜାଙ୍କ ସୈନ୍ୟ ପ୍ରାୟ ଭଗ୍ନ ରୁଗ୍ଣ ଥିଲେ ସୁଦ୍ଧା ବାକୀ ସୈନ୍ୟ ମାନେ ସାହସ ଛାଡ଼ିଲେ ନାହିଁ । ଖୋର୍ଦ୍ଧା ନରପତି ରାଣୀଙ୍କୁ ସେନାପତି ରୂପେ ଦେଖି ଅନେକ ନାନା ପରିହାସ କରିବାକୁ ଲାଗିଲେ । ରାଣୀ କ୍ଷଣକାଳ ସକାଶେ ମୌନ ଭାବରେ ସହି ଯାଇ ଉପଯୁକ୍ତ ଉତ୍ତର ଦ୍ୱାରା ରାଜାଙ୍କୁ ଶିକ୍ଷା ଦେଲେ । ଦେଖୁ ଦେଖୁ ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧ ତୁମୁଳ ହୋଇ ଉଠିଲା । ଶତ୍ରୁ ସୈନ୍ୟ

ବହୁତ ଥିବାରୁ ବାକିର ସୈନ୍ୟ ମାନେ ସେପରି ବିକ୍ରମ ଦେଖାଇ ପାରୁ ନ ଥିଲେ । ଖୋର୍ଦ୍ଧାର ସୈନ୍ୟମାନେ ସମୁଦ୍ର ଲହଡ଼ୀ ପରି ସେମାନଙ୍କ ଉପରକୁ ମାଡ଼ି ଆସିଲେ । ବିକ୍ରମ ବାକିର ପାଇକମାନେ ହୀନ ସାହସ ହୋଇ ଯୁଦ୍ଧ ଭୂମିରୁ ପଳେଇବାକୁ ବସିବାର ଦେଖି ରାଣୀ ଉତ୍ସାହ ବାକ୍ୟ ଉଚ୍ଚାରଣ କରିବାକୁ ଲାଗିଲେ । ମାତ୍ର ସେଥିରେ କୌଣସି ସୁଫଳ ହେବାର ନ ଦେଖି ଶେଷରେ ରାଣୀ ଜୀବନ ଆଶା ବିସର୍ଜନ କରି କେତେ ଜଣ ବିଶ୍ୱସ୍ତ ଅନୁଚରଙ୍କ ସହିତ ଅପୂର୍ବ ସାହସରେ ଶତ୍ରୁ ଦଳରେ ପଶି ଘାତ ହନ୍ତା ରାଜାଙ୍କର ଅନ୍ୱେଷଣ କରିବାକୁ ଲାଗିଲେ । ସେ ସେତେବେଳେ ଯେପରି ସହାୟସମ୍ବଳ ଶୂନ୍ୟ ହୋଇଥିଲେ, ସହଜରେ ଶତ୍ରୁ ହସ୍ତରେ ପ୍ରାଣ ହରାଇ ଥାଆନ୍ତେ । ମାତ୍ର ଦୀନବନ୍ଧୁଙ୍କ କୃପାରୁ ଫଳ ବିପରୀତ ହେଲା । ରାଣୀଙ୍କର ସେହି ଆକସ୍ମିକ ଆକ୍ରମଣ ଦର୍ଶନରେ ଶତ୍ରୁପକ୍ଷ ହତବୁଦ୍ଧି ହୋଇ ଭୟରେ ରାଜାଙ୍କୁ ଘେନି ପଳାୟନ କଲେ । ଏହି ସୁଯୋଗରେ ରାଣୀ ଅବଶିଷ୍ଟ ପାଇକମାନଙ୍କୁ ଡାକି ଶତ୍ରୁପକ୍ଷର ପଶ୍ଚାଦ୍ଧାବନ କଲେ । ଶୁଭବେଳେ ସବୁ ଶୁଭ ମିଳିଯାଏ । ପୂର୍ବରୁ ରାଜା ଧନୁର୍ଜୟ ବଡ଼ମ୍ବାର ଯେଉଁ ସୈନ୍ୟଦଳ ମଗାଇ ଥିଲେ, ସେମାନେ ଆସି ଏତେବେଳେ ବାଟରେ ମିଶିଗଲେ । ଉଭୟ ପକ୍ଷର ସୈନ୍ୟ ସଂଖ୍ୟା ପ୍ରାୟ ସମାନ ହେବାର ଦେଖି ରାଣୀ ଦ୍ୱିଗୁଣ ଉତ୍ସାହରେ ଅନୁଧାବନ କଲେ ଏବଂ ଆଗରେ ଯାଇ ରାଜାଙ୍କର ପଥରୋଧ କରିବା ପାଇଁ କେତେକ ବିଶ୍ୱସ୍ତ ପାଇକଙ୍କ ସହିତ ଦଳବେହେରାଙ୍କୁ ଆଦେଶ ଦେଲେ । ଏହି ରୂପେ ତୁଳସୀପୁର ଅତିକ୍ରମ କରି କଳାପଥର ଗ୍ରାମଠାରେ ଦୁଇପକ୍ଷ ପୁନର୍ବାର ମିଳିତ ହେଲେ ।

ତୃତୀୟବାର ଯୁଦ୍ଧ ଲାଗିଲା । ଖୋର୍ଦ୍ଧା ରାଜାଙ୍କୁ ଧର୍ମ ଛାଡ଼ିଲା । ସେ ଅନନ୍ୟୋପାୟ ହୋଇ ଯୁଦ୍ଧରେ ପୃଷ୍ଠ ଭଙ୍ଗ ଦେଲେ । ତାଙ୍କର

ଅନେକ ସୈନିକ ବାକି ପାଇକଙ୍କ ହାତରେ ନିହତ ହେଲେ । ରାଜା ପଳାଇବାକୁ ବହୁତ ଚେଷ୍ଟା କରିଥିଲେ ସୁଦ୍ଧା ବ୍ୟୂହ ଭେଦ କରି ନ ପାରି କେତେ ଜଣ ଅନୁଚରଙ୍କ ସହିତ ବନ୍ଦୀ ହେଲେ ; କିନ୍ତୁ



ଉଦାର ହୃଦୟା ରାଣୀ ବନ୍ଦୀ ରାଜାଙ୍କ ପ୍ରତି କୌଣସି ପ୍ରକାର ଅସମ୍ମାନ ପ୍ରଦର୍ଶନ ନ କରି ମାନେ ମାନେ ବିଦାୟ ଦେବାକୁ ଉଦ୍ୟତ ହେବାରୁ ଦେଖି ରାଜା ଯୁଦ୍ଧର କ୍ଷତି ପୂରଣ ସ୍ୱରୂପ କେତେକ କାହାଣ କଉଡ଼ି ଏବଂ ନିଜ ରାଜ୍ୟର ଅନ୍ତର୍ଗତ ସମସ୍ତ କୁପେଲ୍ଲା ପ୍ରଗନାଟି ପ୍ରଦାନ କରିବାକୁ ଅଙ୍ଗୀକାର କରିଥିଲେ । ଏହି ପ୍ରସ୍ତାବରେ ଉଭୟ ପକ୍ଷ ମଧ୍ୟରେ ସନ୍ଧି ହେଲା ଏବଂ ରାଜା ବିଦାୟ ନେଇ ଲଜ୍ଜାରେ ନିଜ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ ।

ଏଣେ ରାଣୀ ସୈନ୍ୟମାନଙ୍କର ହର୍ଷ କୋଳାହଳ ସଙ୍ଗେ ଜୟଶ୍ରୀ ଧାରଣ କରି ପୁର ମଧ୍ୟରେ ପ୍ରବେଶ କଲାକ୍ଷଣି ତାଙ୍କର

ରାଜାନ୍ତର ଉପସ୍ଥିତ ହେଲା ତାଙ୍କର ନିରୁଦ୍ଧ ଶୋକ ବହ୍ନିପୂର୍ଣ ବେଗରେ ଉଚ୍ଛୁଳି ପଡ଼ିଲା । ପତିପ୍ରାଣା ରମଣୀ ଦୁର୍ବହ ଶୋକ ଭାରରେ ନିଷ୍ପେଷ୍ଟ ହୋଇ ପଡ଼ିଲେ । ଏହି ଭାବରେ ତିନ ଦିନ ତିନ ରାତି ବିତିଗଲା । ଲୋକେ ତାଙ୍କର ମୃତ୍ୟୁ ନିଶ୍ଚିତ ବୋଲି ଭାବିଲେ । ମାତ୍ର ଈଶ୍ୱରଙ୍କ ଅପାର କରୁଣା, ରାଜକୁମାର ଓ ପ୍ରଜାମାନଙ୍କର ସୌଭାଗ୍ୟ ବଳରେ ସେ ମୋହଗ୍ରାସରୁ ମୁକ୍ତ ହୋଇ ଧୈର୍ଯ୍ୟ ସହକାରେ ପତିଙ୍କ ଅନ୍ତ୍ୟେଷ୍ଟି କ୍ରିୟା ସମ୍ପାଦନ କଲେ ଏବଂ ସିଂହାସନାରୂଢ଼ ବାଳକ ପୁତ୍ର ଦସ୍ୟୁନିଧିଙ୍କର ପ୍ରତିଭୂ ହୋଇ ସମସ୍ତ ରାଜକାର୍ଯ୍ୟ ବୁଝିବାକୁ ଲାଗିଲେ । ବୃହତ୍ କୁଶପଲ୍ଲୀ ପ୍ରଗନା ଝଣ୍ଡା ମିଶି ତାଙ୍କର ରାଜ୍ୟ ବୃଦ୍ଧିଲାଭ କରି ଥିଲା । ସେ ପ୍ରଥମେ ରାଜ୍ୟ ବଜାୟର ସହାୟ ଅମାତ୍ୟ ଏବଂ ପଦାତିକ ମାନଙ୍କର ଜାଗିର ବୃତ୍ତି ବଢ଼ାଇ ଦେଇ ସେମାନଙ୍କୁ ସନ୍ତୁଷ୍ଟ କରିଥିଲେ । ତତ୍ପରେ ପ୍ରଜାମାନଙ୍କୁ ନାନା ଆଶା ଆଶ୍ୱାସନା ଦେଇ ସୁଖରେ ପାଳନ କରିବାକୁ ଲାଗିଲେ । ଏହିପରି ସେ ୧୭୧୫ ରୁ ୧୭୨୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପ୍ରାୟ ଦଶ ବର୍ଷ କାଳ ରାଜ୍ୟ ଶାସନ କାର୍ଯ୍ୟ ଚଳାଇଥିଲେ ।

ପୂର୍ବେ ଏ ଦେଶରେ କ୍ଷତ୍ରିୟ କରଣ ମହିଳାମାନେ ନିଜ ନିଜ ଗୃହ ମଧ୍ୟରେ ବିଦ୍ୟା ଶିକ୍ଷା କରୁଥିଲେ । ରାଜ ପରିବାର ମଧ୍ୟରେ ଅନେକ ରମଣୀ କାବ୍ୟାଦି ଚର୍ଚ୍ଚା କରୁଥିବାର ଯଥେଷ୍ଟ ପ୍ରମାଣ ମିଳେ । ଆମ୍ଭମାନଙ୍କର ଏହି ରାଣୀ ଶୁକଦେଈ ଯେ ସୁଶିକ୍ଷିତା ଥିଲେ, ତାହା ତାଙ୍କ କାର୍ଯ୍ୟାବଳୀରୁ ସ୍ପଷ୍ଟ ବୁଝା ପଡୁଅଛି । କି ପତିଭକ୍ତି, କି ସନ୍ତାନ ବାତ୍ସଲ୍ୟ, କି ପ୍ରଜାପାଳନ କୌଣସି ଗୁଣରେ ସେ ଊଣା ନ ଥିଲେ । ଏବଂ ପ୍ରଜାର କର୍ତ୍ତବ୍ୟ ପାଳନରେ ସେ ଯେଉଁ ଆଦର୍ଶ ଦେଖାଇ ଯାଇଛନ୍ତି, ତାହା ଆଜିର ମହିଳାମାନଙ୍କର ସର୍ବଦା ସ୍ମରଣୀୟ ହେବା ଉଚିତ । ତାଙ୍କ ପର ବୀରରମଣୀ ଏ ଅନୁନ୍ନତ

ଓଡ଼ିଶାର କାର୍ତ୍ତିକ ପ୍ରତିବେଶୀ ରାଜ୍ୟମାନଙ୍କରେ କେତେ ଜଣ ଅଛନ୍ତି ? ରାଣୀ ଶୁକ ଦେଈଙ୍କ ପରି ବୀରରମଣୀଙ୍କୁ ଜନ୍ମ ଦେଇ ଏ ଉତ୍କଳ ଜନନୀ ଧନ୍ୟ ହୋଇଛି । ଏହି ଭାରତବର୍ଷର ଅନ୍ୟାନ୍ୟ ବୀରରମଣୀ ମାନଙ୍କ ସହିତ ତୁଳନା କଲେ ଶୁକଦେଈ କେଉଁ ଗୁଣରେ ହୀନ ନୁହନ୍ତି । ତଥାପି ତାଙ୍କର ନାମ ଯେ ଏତେ ଦିନ ଯାଏ ଲୋକ ପ୍ରସିଦ୍ଧ ହୋଇ ନାହିଁ, ତହିଁର କାରଣ ଆମ୍ଭେମାନେ ଇତିହାସରେ ଅଜ୍ଞ । ମାତ୍ର ଏହା ବିଶ୍ୱାସ କରାଯାଏ ଦିନେ ଏହି ବୀରନାରୀ ଦେଶବାସୀଙ୍କ ହୃଦୟରେ ଉଚ୍ଚ ଆସନ ଅଧିକାର କରି ବସିବେ ।

ଜଗତରେ ଯେଉଁମାନେ ଆପଣାର ସମସ୍ତ ସୁଖ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଅଧ୍ୟବସାୟ ସହକାରେ କଠୋର କର୍ତ୍ତବ୍ୟ ସାଧନ କରି ଯାଆନ୍ତି ସେହିମାନେ ଏହି ମର୍ତ୍ତ୍ୟ ଧାମରେ ଅମର ପଦବୀ ଲାଭ କରନ୍ତି । ସେହି ଅମରଙ୍କୁ ଆମ୍ଭମାନଙ୍କୁ ଆଦର୍ଶ କରି ନିଜର ଜୀବନ ଗଠନ କରିବା ପ୍ରତ୍ୟେକ ସ୍ତ୍ରୀ ଓ ପୁରୁଷର କର୍ତ୍ତବ୍ୟ ।

—※—

# ମହାରାଣୀ ସ୍ୱର୍ଣ୍ଣମୟୀ

ବଙ୍ଗଳାରେ ମହାରାଣୀ ସ୍ୱର୍ଣ୍ଣମୟୀଙ୍କ ନାମ ପ୍ରାୟ ସମସ୍ତଙ୍କୁ ଜଣା । ତାଙ୍କର ଦାନକୀର୍ତ୍ତି ସମଗ୍ର ବଙ୍ଗ ଦେଶରେ ବିସ୍ତାରିତ ହୋଇଅଛି । ସ୍ୱର୍ଣ୍ଣମୟୀ କୌଣସି ରଜାର ରାଣୀ ନ ଥିଲେ କିମ୍ବା ରାଜକନ୍ୟା ନ ଥିଲେ । ନିଜ ଗୁଣରେ ସେ ମହାରାଣୀ ହୋଇ ପାରିଥିଲେ । ତାଙ୍କର ଗୁଣାବଳୀ ଶ୍ରବଣ କଲେ କିଏ ନ କହିବ ଯେ ନାରୀ ପୁରୁଷଠାରୁ ବଳି ଦେଶହିତ ସାଧନ କରି ପାରନ୍ତି ? ହିତ ପଥରେ ଗଲେ ନାରୀ ଜଗତର ବଡ଼ ହୁଏ, ଦୃଷ୍ଟାନ୍ତ ସ୍ୱର୍ଣ୍ଣମୟୀଙ୍କ ଜୀବନରେ ସୁସ୍ପଷ୍ଟ ହୋଇଅଛି ।

ବାଲ୍ୟ କାଳରେ ସ୍ୱର୍ଣ୍ଣମୟୀ ଜଣେ ଦରିଦ୍ରର କନ୍ୟା ଥିଲେ ବର୍ଦ୍ଧମାନ ଜିଲ୍ଲାର ଗୋଟିଏ ପଲ୍ଲୀ ଗ୍ରାମରେ ତେଲି କୁଳରେ ତାଙ୍କର ଜନ୍ମ । କନ୍ୟାଟିର ସର୍ବ ସୁଲକ୍ଷଣ ଦେଖି ସମସ୍ତେ ପ୍ରଶଂସା କରିବାକୁ ଲାଗିଲେ । ତାଙ୍କର ଗୁଣ ଚାରିଆଡ଼େ ପ୍ରଚାରିତ ହେଲା । କ୍ରମେ ବିବାହ ବୟସ ଆସନ୍ତେ କାଶିମ ବଜାରର ଜମିଦାର କୁମାର କୃଷ୍ଣନାଥ ତାହାଙ୍କ ଗୁଣରେ ଆକୃଷ୍ଟ ହୋଇ ତାଙ୍କର ପାଣି ଗ୍ରହଣ କଲେ । ଧନାଢ୍ୟ ପତି ଗୃହକୁ ଆସି ଦରିଦ୍ର କନ୍ୟା ସ୍ୱର୍ଣ୍ଣମୟୀ କିଛି ଲେଖା ପଢ଼ା କରିବାର ସୁବିଧା ପାଇଲେ । ପତିଙ୍କ ଯତ୍ନ ଫଳରେ ସେ ସଂସାରର କାର୍ଯ୍ୟ ଏବଂ ଉପଯୋଗୀ ଶିକ୍ଷା ଲାଭ କରି ପାରିଥିଲେ । ସୁଲକ୍ଷଣା ସ୍ୱର୍ଣ୍ଣମୟୀ ପତି ଗୃହରେ ପଦାର୍ପଣ କଲା ଦିନୁ ତାଙ୍କର କ୍ରମଶଃ ଉନ୍ନତି ଦେଖାଦେଲା । ଦେଶ ହିତକର ପୁଣ୍ୟ କାର୍ଯ୍ୟରେ କୃଷ୍ଣ

ନାଥଙ୍କର ବିଶେଷ ଆଗ୍ରହ ଥିଲା । ନାନା ସତ୍ କାର୍ଯ୍ୟରେ ସେ ବହୁ ଧନ ଦାନ ବିତରଣ କରୁଥିଲେ । ତାହାର ଫଳରେ କୃଷ୍ଣନାଥ 'ରଜା ବାହାଦୁର' ଉପାଧି ପାଇଥିଲେ । ତାଙ୍କ ଔରସରେ ସ୍ୱର୍ଣ୍ଣମୟୀଙ୍କର ଦୁଇଟି କନ୍ୟା ଜନ୍ମିଥିଲେ । କିନ୍ତୁ ସେ ସନ୍ତାନ ଲାଭ ସୁଖ ଅଧିକ ଦିନ ତାଙ୍କୁ ଭୋଗ କରିବାକୁ ହୋଇ ନ ଥିଲା । ବିଧାତାଙ୍କର ଅଭିପ୍ରେତ ବିଧାନରେ ସେ ଦୁଇଟି କନ୍ୟା ଅଳ୍ପକାଳରେ ନଷ୍ଟ ହୋଇ ଗଲେ । କେବଳ ଶୋକକୁ ନୁହେଁ, ସ୍ୱର୍ଣ୍ଣମୟୀଙ୍କର ଦୁର୍ଦ୍ଦିନ ମାତ୍ର ଆସିଲା । ଅଳ୍ପକାଳ ଭିତରେ ସେ ପ୍ରାଣାଧିକ ପତିଙ୍କୁ ହରାଇ ବସିଲେ । ରଜା-ବାହାଦୁର କୃଷ୍ଣନାଥଙ୍କର ଅକାଳ ମରଣ ତାହାଙ୍କୁ ଅନେକ କ୍ଳେଶ ଦେଇଥିଲା । ଗୋଟିଏ ନରହତ୍ୟା ମକଦ୍ଦମାରେ କୃଷ୍ଣନାଥଙ୍କୁ ଅଦାଲତରେ ଉପସ୍ଥିତ ହେବାକୁ ପଡ଼ିବ ଶୁଣି ଅପମାନ ଭୟରେ ସେ ତାଙ୍କର କଲିକତାସ୍ଥିତ ଭବନରେ ଉପସ୍ଥିତ ହୋଇ ଗୋପନରେ ଆତ୍ମହତ୍ୟା କରିଥିଲେ । ମୃତ୍ୟୁ ପୂର୍ବରୁ ସେ ଖଣ୍ଡିଏ ଉଇଲ କରି ଯାଇଥିଲେ । ତାହାର ବଳରେ 'ଇଷ୍ଟ ଇଣ୍ଡିଆ କମ୍ପାନୀ' ତାଙ୍କର ସ୍ତ୍ରୀଧନ ବ୍ୟତୀତ ଆଉ ସମସ୍ତ ସମ୍ପତ୍ତି ମାଡ଼ି ବସିଲେ । ଭଗବାନଙ୍କ କୃପାରୁ ବିଧବା ସ୍ୱର୍ଣ୍ଣମୟୀ ଏ ମହା ବିପଦ ସମୟରେ ରାଜୀବ ଲୋଚନ ରାୟ ନାମକ ଜଣେ ଯୋଗ୍ୟ ଓ ସାଧୁ ବ୍ୟକ୍ତିଙ୍କୁ ମନ୍ତ୍ରୀ ସ୍ୱରୂପ ପାଇଲେ ଏବଂ ତାଙ୍କର ପରାମର୍ଶରେ ସ୍ୱାମୀଙ୍କର ଉଇଲ ଅଗ୍ରାହ୍ୟ କରାଇବା ଲାଗି ମକଦ୍ଦମା ଦାଏର କଲେ । ଉଇଲ କରିବା ସମୟରେ କୃଷ୍ଣନାଥଙ୍କର ମତିଗତି ସ୍ଥିର ନ ଥିବାର ପ୍ରମାଣିତ ହେବାରୁ ମକଦ୍ଦମାରେ ସ୍ୱର୍ଣ୍ଣମୟୀ ଜୟଲାଭ କରି ସମସ୍ତ ସମ୍ପତ୍ତିର ଉତ୍ତରାଧିକାରିଣୀ ହେଲେ । ମାତ୍ର ଦୀର୍ଘକାଳ ମକଦ୍ଦମାର ବ୍ୟୟ ଯୋଗାଇବାରେ ତାଙ୍କର ପ୍ରଚୁର ଋଣ ହୋଇ ଯାଇଥିଲା । ସୁଖର କଥା ଯେ, ଦେୱାନ ରାଜୀବ ଲୋଚନଙ୍କର କାର୍ଯ୍ୟଦକ୍ଷତା ଗୁଣରେ

ସମସ୍ତ ଋଣ ରାଜ୍ୟର ଆୟରୁ ଅଳ୍ପ କାଳ ମଧ୍ୟରେ ପରିଶୋଧ ହୋଇ ଯାଉଥିଲା ଏବଂ ଜମିଦାରୀର ଆୟ ବହୁଗୁଣରେ ବଢ଼ି ଯାଇଥିଲା ।

ନିଷ୍ଠାପର ହିନ୍ଦୁ ବିଧବା ରୂପେ ସ୍ୱର୍ଣ୍ଣମୟୀ ପବିତ୍ର ଭାବରେ କାଳ ଯାପନ କରି ସର୍ବଦା ଦାନ ପୁଣ୍ୟରେ ନିଜକୁ ନିୟୋଜିତ କରି ଥିଲେ । ସବୁ ସମୟରେ ତାଙ୍କର ହସ୍ତ ଦାନ ଲାଗି ମୁକ୍ତ ଥିଲା । ତାଙ୍କ ନିକଟକୁ କେହି ଯାଚକ ଆସିଲେ ଶୂନ୍ୟ ହସ୍ତରେ ଫେରି ଯାଉ ନ ଥିଲା । ସେ ନାନା ଶ୍ରେଣୀର ଲୋକଙ୍କୁ ନାନା ଭାବରେ ଦାନକରି ସେମାନଙ୍କର ଅଭାବ ପୂରଣ କରୁଥିଲେ । ତାଙ୍କ ଦାନ ଫଳରେ ବହୁ ମେଧାବୀ ଛାତ୍ରଙ୍କର ଉଚ୍ଚ ଶିକ୍ଷାର ସୁବିଧା ହୋଇଥିଲା । ଅନେକ ଭିକାରୀ କାଙ୍ଗାଳୀଙ୍କର ଜଠରଜ୍ୱାଳା ନିବାରିତ ହୋଇଥିଲା । କେତେ ଋଣଗ୍ରସ୍ତ ବ୍ୟକ୍ତି ଋଣମୁକ୍ତ ହୋଇଥିଲେ । କେତେ କୂପ, ପୁଷ୍କରିଣୀ ସ୍ଥାନେ ସ୍ଥାନେ ଖୋଳା ହୋଇ ସାଧାରଣ ଲୋକଙ୍କର ଜଳାଭାବ ଦୂର କରିଥିଲା । ପ୍ରତିବର୍ଷ ପଣା ସଂକ୍ରାନ୍ତି ଦିନ ସେ ବହୁ ଗରିବ ଦୁଃଖୀଙ୍କୁ ପ୍ରଚୁର ପାନ ଭୋଜନ ଦ୍ୱାରା ଏବଂ ବ୍ରାହ୍ମଣମାନଙ୍କୁ ଧନ ବସ୍ତ୍ର ପ୍ରଦାନ ଦ୍ୱାରା ପରିତୃପ୍ତ କରୁଥିଲେ । ଦୁର୍ଗା ପୂଜା ସମୟରେ ସେହିପରି ସହସ୍ର ସହସ୍ର ଲୋକଙ୍କୁ ଭୂରି ଭୋଜନ ଦାନ ଏବଂ ବ୍ରାହ୍ମଣ ପଣ୍ଡିତମାନଙ୍କୁ ବାର୍ଷିକ ଅର୍ଥ ସାହାଯ୍ୟ ଦାନ ପରିତୁଷ୍ଟ କରୁଥିଲେ । ସେ ନିଜ ଜମିଦାରୀ ମଧ୍ୟରେ ସାନ ବଡ଼ ଅନେକ ବିଦ୍ୟାଳୟ ଏବଂ ଚତୁଷ୍ପାଠୀମାନ ବସାଇ ପ୍ରଜାମାନଙ୍କର ଅଜ୍ଞାନ-ଅନ୍ଧକାର ଦୂର କରିବାର ସୁବ୍ୟବସ୍ଥା କରିଥିଲେ । କେବଳ ସେତିକି ନୁହେଁ ଅନେକ ବଡ଼ ବଡ଼ ବିଦ୍ୟାଳୟର ଅଭାବ ପୂରଣ ନିମିତ୍ତ ସେ ପ୍ରଚୁର ଅର୍ଥ ସାହାଯ୍ୟ କରୁଥିଲେ । ଦେଶ ହିତକର କାର୍ଯ୍ୟରେ ତାଙ୍କର ଦାନ ଅଳ୍ପ ନ ଥିଲା । ଯାବତୀୟ ଲୋକ ହିତକର କାର୍ଯ୍ୟରେ ସେ ଅକୁଣ୍ଠିତ ଚିତ୍ତରେ ପ୍ରଚୁର ଅର୍ଥ ଦାନ କରୁଥିଲେ । ସେ ଦାନ ଶତ ସହସ୍ର

ନୁହେଁ । ସ୍ଥଳ ବିଶେଷରେ ଲକ୍ଷ ଲକ୍ଷ ମୁଦ୍ରା ସେ ଅକାତରରେ ଦାନ କରିଥିଲେ । ବଡ଼ ଦାନ ମଧ୍ୟରେ ମୁର୍ଶିଦାବାଦ ଜିଲ୍ଲାରେ ଜଳ କଳ ପାଇଁ ପ୍ରାୟ ଦେଢ଼ଲକ୍ଷ, ବଙ୍ଗଳାର ଦୁର୍ଭିକ୍ଷରେ ସାହାଯ୍ୟ ସ୍ୱରୂପ ଲକ୍ଷେ ପଚିଶ ହଜାର ଏବଂ ସ୍ତ୍ରୀମାନଙ୍କ ଡାକ୍ତରୀ ଶିକ୍ଷା ପାଇଁ ଛାତ୍ରୀ-ନିବାସ ନିର୍ମାଣରେ ଲକ୍ଷେ ଟଙ୍କା ସେ ପ୍ରଦାନ କରିଥିଲେ । ଏହା ଛଡ଼ା ଯେତେବେଳେ ଯେଉଁ ଅଭାବ କଥା ତାଙ୍କ କାନକୁ ଆସୁଥିଲା ସେଥିରେ ଆପଣା ଶକ୍ତି ଅନୁସାରେ ଯଥେଷ୍ଟ ଦାନ କରୁଥିଲେ । ଏପରି ଦାନ ଏ ଯୁଗରେ ପ୍ରାୟ ଦେଖାଯାଏ ନାହିଁ । ଗୁଣଗ୍ରାହୀ ସରକାର ତାହାଙ୍କର କୀର୍ତ୍ତିକଳାପରେ ସନ୍ତୁଷ୍ଟ ହୋଇ ଆଜକୁ ପ୍ରାୟ ୪୦ ବର୍ଷ ତଳେ ତାଙ୍କୁ ମହାରାଣୀ ଉପାଧି ଦ୍ୱାରା ସମ୍ମାନ ଦେଖାଇ ଥିଲେ । ଏହି ଉପାଧି ଦେବାର ପ୍ରାୟ ସାତ ବର୍ଷ ପରେ ମହାରାଣୀଙ୍କର ଉଦାରତାର ପ୍ରଶଂସା ଏବଂ ଗୁଣାବଳୀର ଅଧିକ ପରିଚୟ ପାଇ ସରକାର ବାହାଦୁର ପୁଣି ସି: ଆଇ: ଇ (ସାମ୍ରାଜ୍ୟସୁହୃଦ୍) ନାମକ ଉଚ୍ଚ ଉପାଧିରେ ତାହାଙ୍କୁ ଭୂଷିତ କରିଥିଲେ । ଦରିଦ୍ର କୁଟୀରରେ ଜନ୍ମି ସ୍ୱର୍ଣ୍ଣମୟୀ ନିଜ ସଦ୍‌ଗୁଣ ବଳରେ କେତେ ଉପରକୁ ଉଠି ଥିଲେ ; ତାହା ପ୍ରତ୍ୟେକ ଶିକ୍ଷିତା ମହିଳାଙ୍କର ଭାବିବା ଉଚିତ । ଇହଲୋକରେ ତାଙ୍କର ଏପରି ସମ୍ମାନ ହୋଇଥିଲା । ପରଲୋକରେ ତାହାଙ୍କର ତତୋଽଧିକ ସଦ୍‌ଗତି ହୋଇଥିବ । ଗୁଣ ଆଗରେ ଜାତି ଲିଙ୍ଗ ବିଚାର କିଛି ରହେ ନାହିଁ । ମହାରାଣୀ ସ୍ୱର୍ଣ୍ଣମୟୀ ଏବେ ଦେଶରେ ସମସ୍ତଙ୍କର ପ୍ରାତଃ ସ୍ମରଣୀୟା ହୋଇଅଛନ୍ତି ।

ମହାରାଣୀ ସ୍ୱର୍ଗାରୋହଣ କରିବାର ଆଜକୁ ପ୍ରାୟ ୩୦ ବର୍ଷ ହେବ । ଏହି ଅଳ୍ପ ବର୍ଷ ମଧ୍ୟରେ ତାଙ୍କର ନାମ ଚତୁର୍ଦ୍ଦିଗରେ ବିସ୍ମୃତ ହୋଇ ପଡ଼ୁଅଛି । ବଙ୍ଗଳାର ବାରଟି ଜିଲ୍ଲାରେ ତାଙ୍କର ଜମିଦାରୀ ଥିଲା । ମୃତ୍ୟୁ ସମୟକୁ ସେଥିରୁ ବାର୍ଷିକ ପ୍ରାୟ ସାତ ଲକ୍ଷ

ଽଙ୍କା ଅଦାପୂ ଦେଉଥିଲ । ମହାରାଣୀଙ୍କ ଉନ୍ନେ ତାଙ୍କର ଭଗିନେପୂ ମଣୀନ୍ଦ୍ର ଚନ୍ଦ୍ରନନ୍ଦୀ ମହାରଜା ଉପାଧିରେ ଭୂଷିତା ହୋଇ ଏକ୍ଟ ବପୂଳ ସମ୍ପତ୍ତିର ଅଧିକାରୀ ହୋଇ ଅଛନ୍ତି । ସ୍ୱର୍ଣ୍ଣମୟୀଙ୍କର କୌଣସି ପୂତ୍ର କନ୍ୟା ନ ଥିଲ ସତ୍ୟ, ମାତ୍ର ଦେଶର ସହସ୍ର ଲୋକ ତାଙ୍କୁ ମା' ପର ଜାଣିଥିଲେ । ଏପର ଗୋଟିଏ ଗୋଟିଏ ପୂଣ୍ୟ ଶ୍ଳୋକା ରମଣୀ ଯେଉଁ ଦେଶରେ ଜନ୍ମ ଲଭ କରନ୍ତି । ସେ ଦେଶ ଧନ୍ୟ ।

—o—

## ମୀରାବାଈ

ଶ୍ରୀମତୀ ମୀରା ୧୪୨୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେ ରଜପୂତନାର ମାରବାର ଦେଶ ଅନ୍ତର୍ଗତ ମେରତା ଗ୍ରାମର ଅଧିପତି ରଠୋର ବଂଶୀୟ ରଜା ରତ୍ନଆଙ୍କର କନ୍ୟା ଥିଲେ । ଶୈଶବ କାଳରୁ ତାଙ୍କର ହୃଦୟ ଭକ୍ତି-ରସମୃତରେ ପରିପ୍ଲୁତ ହୋଇଥିଲ । ସେ ଚିତୋରର ରଜ ମହିଷୀ ହୋଇ ମଧ୍ୟ ସମସ୍ତ ବିଷୟ ବାସନା ଓ ଭୋଗ ବଳାସ ପରିତ୍ୟାଗ କରି ନନ୍ଦଲଲ ହରି ଗୁଣ କୀର୍ତ୍ତନରେ ସମସ୍ତ ଜୀବନ ଅତିବାହିତ କରିଥିଲେ ।

ବାଲ୍ୟକାଳରୁ ରଜପୂତନାର ଗୃହେ ଗୃହେ ମୀରଙ୍କର ଅପୂର୍ବ ରୂପଲବଣ୍ୟର ବିଷୟ ପ୍ରଚରିତ ହୋଇଥିଲ । ତେଣୁ ସମସ୍ତେ ତାଙ୍କର ଦର୍ଶନ ନିମିତ୍ତ ଅତ୍ୟନ୍ତ ଉତ୍ସୁକ ହୋଇଥିଲେ । ଲୋକେ ତାଙ୍କ ସହିତ କଥୋପକଥନ କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ । କିନ୍ତୁ ମୀରଙ୍କୁ

ସେ ସବୁ ଭଲ ଲାଗୁ ନ ଥିଲା । ସେ ନିର୍ଜନରେ ବସି ହରିଗୁଣ କୀର୍ତ୍ତନରେ ପରମ ସୁଖ ଲାଭ କରୁଥିଲେ । ତେଣୁ କେତେବେଳେ ସରୋବର ତୀରରେ, କେତେବେଳେ ଉପବନରେ, କେତେବେଳେ ଅବା ଦେବ ମନ୍ଦିରରେ ବସି ହରିନାମ ଭଜିବାରେ ମଗ୍ନ ରହୁଥିଲେ । ତାଙ୍କର ଅପୂର୍ବ ରୂପଲାବଣ୍ୟ ଓ ସୁଲଳିତ କଣ୍ଠସ୍ୱର ଏକାଠି ହୋଇ ଦର୍ଶକ ଓ ଶ୍ରୋତାମାନଙ୍କୁ ଇନ୍ଦ୍ରଜାଲ ପରି ମୁଗ୍ଧ କରୁଥିଲା । ମୀରା କୁସୁମ ମାଳାରେ ବିଭୂଷିତା ଓ ଚନ୍ଦନ ଚର୍ଚ୍ଚିତା ହୋଇ ସଙ୍ଗିନୀମାନଙ୍କ ଗହଣରେ ଯେତେବେଳେ ସୁଲଳିତ ସ୍ୱରରେ ହରିନାମ କୀର୍ତ୍ତନ କରୁଥିଲେ, ସେତେବେଳେ ଯେ ତାଙ୍କୁ ଦେଖୁଥିଲା, ତା’ମନରେ ଦେବ କନ୍ୟାର ଭ୍ରମଜାତ ହେଉଥିଲା ।

ମୀରାଙ୍କର ରୂପ ମାଧୁରୀ ଓ ସଙ୍ଗୀତର ଖ୍ୟାତି ଅଚିରେ ଦେଶ-ଦେଶାନ୍ତରେ ପରିବ୍ୟାପ୍ତ ହେବାରୁ ଭକ୍ତଗଣ ସୁଦୂର ଦେଶମାନଙ୍କରୁ ତାଙ୍କର ସଙ୍ଗୀତ ସ୍ୱର-ଲହରୀ ଶୁଣିବା ଅଭିପ୍ରାୟରେ ଦଳେ ଦଳେ ଆସି ମେଡ଼ତାରେ ଉପସ୍ଥିତ ହେଉଥିଲେ । ମୀରାଙ୍କ ପିତାଙ୍କର ମଧ୍ୟ ସେମାନଙ୍କର ଯଥୋଚିତ ଅଭ୍ୟର୍ଥନା କରୁଥିଲେ । କଥାରେ ଅଛି—‘ଭୁଣ୍ଡ ବାଦ୍ୟ ସହସ୍ର କୋଶ’ । ମୀରାଙ୍କର ରୂପଲାବଣ୍ୟ ଓ ସଙ୍ଗୀତ ଖ୍ୟାତି ବିଷୟ କୌଣସିଠାରେ ଅଛପା ରହିପାରିଲା ନାହିଁ । କ୍ରମଶଃ ଚିତୋରର ଯୁବରାଜ ରାଣା କୁମ୍ଭଙ୍କ କର୍ଣ୍ଣରେ ମୀରାଙ୍କର ସୁଖ୍ୟାତି ପ୍ରବେଶ ହେବାରୁ ତାଙ୍କର ଚିତ୍ତ ଚାଞ୍ଚଲ୍ୟ ଜାତ ହେଲା । ତହୁଁ ସେ ଥରେ ମାତ୍ର ମୀରାବାଈଙ୍କର ଅନୁପମ ସୌନ୍ଦର୍ଯ୍ୟ ଦର୍ଶନ ଓ ମନୋହର ସଙ୍ଗୀତ ଶ୍ରବଣ କରି ନିଜର ଚକ୍ଷୁ କର୍ଣ୍ଣର ସାର୍ଥକତା ସମ୍ପାଦନ କରିବାକୁ ମନ ବଳାଇଲେ । ସେ ଛଦ୍ମବେଶରେ ଆସି ମୀରାଙ୍କର ସୌନ୍ଦର୍ଯ୍ୟ ଦର୍ଶନ ଓ ସଙ୍ଗୀତ ଶ୍ରବଣରେ ଚିତ୍ରପଟ ପରି ସ୍ଥିର ଓ ସ୍ତମ୍ଭିତ ହୋଇ ରହିଲେ । ମୀରାଙ୍କ ନିକଟରୁ ଅନ୍ତର ହେବାକୁ

ତାଙ୍କର ପାଦ ଚଳିଲା ନାହିଁ । ଯୁବରାଜ ସେଠାରେ ଦୁଇ ଘଣ୍ଟା ଧରି ଅବସ୍ଥାନ କରି ମୀରାଙ୍କର ସୌନ୍ଦର୍ଯ୍ୟ ଦର୍ଶନ ଓ ସଙ୍ଗୀତ ଶ୍ରବଣ କଲେ । ତଥାପି ତାଙ୍କର ମନରେ ତୃପ୍ତି ଆସିଲା ନାହିଁ । ମୀରାଙ୍କୁ ଲାଭ କରିବାର ଇଚ୍ଛା ଯୁବରାଜଙ୍କ ମନରେ ବଳବତୀ ହୋଇ ଉଠିଲା । ମେଉଡ଼ାର ରାଣା ତାଙ୍କର ପରିଚୟ ପାଇ ନିଜ କନ୍ୟାକୁ ଆନନ୍ଦ ସହକାରେ ତାଙ୍କୁ ସମର୍ପଣ କଲେ । ଚିତୋରର ଯୁବରାଜ ସୁ-କବି, ପ୍ରେମିକ ଓ ନମ୍ର ପ୍ରକୃତିର ଥିଲେ ।

ମୀରା ଚିତୋରର ଅଧୀଶ୍ୱରୀ ହେଲେ ସତ କିନ୍ତୁ ତାହା ସଙ୍ଗେ ସଙ୍ଗେ ତାଙ୍କର ସମସ୍ତ ଆନ୍ତରିକ ସୁଖ ତିରୋହିତ ହେଲା । କାରଣ ରାଜପ୍ରାସାଦର ଅତୁଳ ଐଶ୍ୱର୍ଯ୍ୟ ଓ ଅଶେଷ ଭୋଗ ବିଳାସରେ ତାଙ୍କର ମନ ତୃପ୍ତି ଲାଭ କଲା ନାହିଁ । ଶ୍ୱଶୁରାଳୟରେ ମୁକ୍ତ କଣ୍ଠରେ ହରିନାମ କୀର୍ତ୍ତନରୁ ବଞ୍ଚିତ ହୋଇ ମାନସିକ ଅଶାନ୍ତିରେ ମୀରା ବ୍ୟାକୁଳିତା ହୋଇ ପଡ଼ିଲେ । ମହିଷୀଙ୍କର ଏପରି ଅବସ୍ଥା ଦେଖି ରାଣା ତାଙ୍କ ମନରେ ପରିବର୍ତ୍ତନ ଆଣିବା ନିମନ୍ତେ କବିତା ରଚନା କରିବାକୁ ତାଙ୍କୁ ଅଭ୍ୟସ୍ତ କରାଇଲେ । ନିଜର ପ୍ରତିଭା ବଳରେ ଅତି ଅଳ୍ପକାଳ ମଧ୍ୟରେ ମୀରା ସୁକବି ହୋଇ ଉଠିଲେ ଏପରିକି ରାଣାଙ୍କର କବିତା ଅପେକ୍ଷା ମୀରାଙ୍କର କବିତା ଅଧିକ ମନୋହାରିଣୀ ହୋଇ ଉଠିଲା । ତାଙ୍କର କବିତାଗୁଡ଼ିକ ଅଧିକାଂଶ ଭକ୍ତି ରସାତ୍ମକ ଥିଲା । ସେ ଭକ୍ତକବି ଜୟଦେବଙ୍କ ଗୀତ ଗୋବିନ୍ଦର ଟୀକା ରଚନା କରିଥିଲେ । ଏଥିରେ ମଧ୍ୟ ମୀରାଙ୍କର ମାନସିକ ଅଶାନ୍ତି ଦୂର ନ ହେବାର ଦେଖି ରାଣା ମୀରାଙ୍କର ଅଭିଳାଷ କ୍ରମେ ରାଜପୁରୀ ମଧ୍ୟରେ ଗୋବିନ୍ଦ ଦେବଙ୍କର ଗୋଟିଏ ମନ୍ଦିର ସ୍ଥାପନ କରାଇ ଦେଲେ ଏବଂ ବୈଷ୍ଣବ ଗଣଙ୍କୁ ଦେବ ମନ୍ଦିରରେ ପ୍ରବେଶ କରିବାର ଅନୁମତି ପ୍ରଦାନ କଲେ ।

ବର୍ତ୍ତମାନ ମୀରାଙ୍କର ଆଉ ମାନସିକ ଅଶାନ୍ତ ବା ବିଷର୍ଣ୍ଣଭାବ ରହିଲା ନାହିଁ । ମନ ଆନନ୍ଦରେ ସେ ବୈଷ୍ଣବଗଣଙ୍କ ସହିତ ମିଳିତ ହୋଇ ମଧୁର ହରିନାମ କୀର୍ତ୍ତନରେ ପରମ ପରିତୋଷ ଲାଭ କଲେ । ଏକ ଦିଗରୁ ମୀରା ଯେପରି ପରମ ସୁଖ ଶାନ୍ତି ଲାଭ କଲେ, ଅନ୍ୟ ଦିଗରେ ରାଣା କୁମ୍ଭ ମଧ୍ୟ ସେହି ପରିମାଣରେ ଅଶାନ୍ତି ଭୋଗ କଲେ । କାରଣ ମୀରା ରାଜଲକ୍ଷ୍ମୀ ହୋଇ ସର୍ବସାଧାରଣରେ ଅସଙ୍କୁଚିତ ଭାବରେ କୁଳ ମର୍ଯ୍ୟାଦାର ସୀମା ଲଂଘନ କରି ସଙ୍ଗୀତ ଗାନ କରନ୍ତି, ଏ କଥା ରାଣାଙ୍କର ସହ୍ୟ ହେଲା ନାହିଁ । କ୍ରମେ ମୀରାଙ୍କ ଚରିତ୍ର ପ୍ରତି ତାଙ୍କର ସନ୍ଦେହ ଜାତ ହେଲା ; କିନ୍ତୁ ଏହାର କୌଣସି ପ୍ରମାଣ ନ ପାଇ ରାଣା ମନେ ମନେ କ୍ରୋଧାନଳରେ ଦଗ୍ଧ ହେବାକୁ ଲାଗିଲେ । ଏକଦା ଚିତୋରର ରାଜଲକ୍ଷ୍ମୀ ରାଣାଙ୍କୁ ସ୍ୱପ୍ନ ଯୋଗେ କହିଲେ—, "ସାବଧାନ ମୀରା କୃଷ୍ଣ ପ୍ରେମର ଅନୁରାଗିଣୀ ଓ ପରମ ସତୀ । ତାଙ୍କର ନିଷ୍କଳଙ୍କ ଚରିତ୍ରରେ ଅମୂଳକ ଦୋଷାରୋପ କରିବା କଦାପି ଉଚିତ ନୁହେଁ ।"

ନିଦ୍ରା ଭଙ୍ଗ ପରେ ରାଣା ନିଜର ଭୁଲ ବୁଝିପାରି ଅନୁତପ୍ତ ହେଲେ ଏବଂ ମୀରାଙ୍କୁ ଡ଼ାକାଇ କହିଲେ, "ତୁମ୍ଭେ ଆଜଠାରୁ ତୁମର ଇଚ୍ଛା ଅନୁସାରେ ମନ୍ଦିର ମଧ୍ୟରେ ଅଥବା ଚିତୋରର କୌଣସି ପ୍ରକାଶ୍ୟ ରାଜପଥରେ ସର୍ବସାଧାରଣଙ୍କ ସହିତ ମିଳିତ ହୋଇ ହରିନାମ କୀର୍ତ୍ତନ କରିପାର । ମୁଁ ତୁମକୁ ଆଉ ବାଧା ଦେବି ନାହିଁ ।"

ବର୍ତ୍ତମାନ ମୀରାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ଗୋବିନ୍ଦଙ୍କୁ ଧନ୍ୟବାଦ ଦେବାକୁ ଲାଗିଲେ । ଗୋବିନ୍ଦ ଜୀଉଙ୍କର ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ପ୍ରବେଶ କରିବାକୁ ସର୍ବ ସାଧାରଣଙ୍କର ସାହସ ହେଉ ନ ଥିଲା । ବର୍ତ୍ତମାନ ସେ ଭୟ ରହିଲା ନାହିଁ ।

ପ୍ରକାଶ୍ୟ ରାଜ ପଥରେ ସମସ୍ତେ ମୀରାଙ୍କର ସଙ୍ଗୀତ ସୁଧା ପାନ କରି ଆପ୍ୟାୟିତ ହେବାକୁ ଲାଗିଲେ ।

ଏକଦା କୌଣସି ରାଜ ପୁରୁଷ ମୀରାଙ୍କର ସଙ୍ଗୀତରେ ମୁଗ୍ଧ ହୋଇ ଗୋବିନ୍ଦ ଜୀଉଙ୍କର କଣ୍ଠରେ ଗୋଟିଏ ବହୁମୂଲ୍ୟ ମାଳା ଅର୍ପଣ କରିଥିଲେ । ଏ କଥା ରାଣାଙ୍କର କର୍ଣ୍ଣଗୋଚର ହୁଅନ୍ତେ ସେ କୌତୁହଳୀ ହୋଇ ସେହି ମାଳା ଦେଖିବାକୁ ଗଲେ । ମାଳା ଦେଖି ତାହାର ମୂଲ୍ୟ ଦଶ ଲକ୍ଷ ମୁଦ୍ରା ହୋଇ ଥିବାର ଅନୁମାନ କଲେ । ତହୁଁ ମୀରାଙ୍କର ଚରିତ୍ର ବିଷୟରେ ତାଙ୍କ ମନରେ ପୁନର୍ବାର ସନ୍ଦେହ ଜାତ ହେଲା । ସେ ମନେ ମନେ ଭାବିଲେ, "ଏପରି ବହୁମୂଲ୍ୟ ମାଳାର ଲୋଭ ସମ୍ବରଣ କରି କେହି ଏହାକୁ ଦେବତାଙ୍କୁ ଅର୍ପଣ କରିବା ସମ୍ଭବ ନୁହେଁ । ମନେହୁଏ ମୀରାଙ୍କର ରୂପ ଲାବଣ୍ୟରେ ମୁଗ୍ଧ ହୋଇ ତାଙ୍କୁ ବଶୀଭୂତ କରିବା ପାଇଁ କେହି ଏପରି ପ୍ରଲୋଭନ ଦେଖାଇ ଅଛି । କିମ୍ବା ମୀରା ନିଜେ ତାଙ୍କର ସତୀତ୍ୱ ହରାଇ ଅଛନ୍ତି । ଏହି ପ୍ରକାର ନାନା ପ୍ରକାର ସନ୍ଦେହ ମନରେ ପୋଷଣ କରି ରାଣା ତରବାରି ଦ୍ୱାରା ମୀରାଙ୍କର ଶିର ଛେଦନ କରିବାକୁ ସଂକଳ୍ପ କଲେ; କିନ୍ତୁ ପରେ ପ୍ରକୃତିସ୍ଥ ହୋଇ ତାଙ୍କୁ ଡକାଇ ନଦୀ ଗର୍ଭରେ ନିମଜ୍ଜିତ ହୋଇ ପ୍ରାଣ ବିସର୍ଜନ କରିବାର ଆଦେଶ ଦେଲେ । ପତିବ୍ରତା ମୀରା ପତିଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି ନିଶୀଥ ସମୟରେ ଗୋବିନ୍ଦଜୀଉଙ୍କୁ ପ୍ରଣାମ କରି ରାଜପ୍ରାସାଦରୁ ସମସ୍ତଙ୍କ ଅଜ୍ଞାତ ସାରରେ ନିର୍ବିକାର ଚିତ୍ତରେ ବାହାରି ଗଲେ । ନଦୀ ତୀରରେ ଉପସ୍ଥିତ ହୋଇ ନଦୀ ଗର୍ଭରେ ନିମଜ୍ଜିତା ହେଲେ । ତହିଁର କିଛିକ୍ଷଣ ପରେ ତାଙ୍କର ସଂଜ୍ଞା ଲୋପ ହେଲା । ଅଚେତ ଅବସ୍ଥାରେ ସେ ଦେଖିଲେ—ବନମାଳା ବିଭୂଷିତ ଏକ ଗୋପାଳ ବାଳକ ତାଙ୍କୁ ଟେକି ଧରିବା ନିମନ୍ତେ କର ବିସ୍ତାର କରୁଅଛନ୍ତି ।

କହୁଛନ୍ତି, "ମୀରା ତୁମେ ପତିଭକ୍ତିର ପରାକାଷ୍ଠା ଦେଖାଇ ଅଛ। ତୁମେ ସଂସାର ନରନାରୀଙ୍କୁ ଭକ୍ତିର ମଧୁର ଗାଥା ଶୁଣାଇ ନିଜର ଓ ଅନ୍ୟର ଜୀବନ ଧନ୍ୟ କର—"

ସଞ୍ଜ ଲଭ ପରେ ମୀରା ଦେଖିଲେ ସେ ବାଲୁକା ଶଯ୍ୟା ଉପରେ ଶୟନ କରିଅଛନ୍ତି । ଏହି ଆକସ୍ମିକ ଓ ଅପ୍ରତ୍ୟାଶିତ ଘଟଣାରେ ମୀରା ଅତ୍ୟନ୍ତ ଆନନ୍ଦିତ ଓ ଆଶ୍ଚର୍ଯ୍ୟାନ୍ୱିତା ହୋଇ ହରିଗୁଣ କୀର୍ତ୍ତନ କରି କରି ବୃନ୍ଦାବନ ଅଭିମୁଖେ ଯାତ୍ରା କରିବାର ଉପକ୍ରମ କଲେ । ସେହି ଗୋପାଳ ବେଶଧାରୀ ବାଳକ ଅଦୃଶ୍ୟରେ 'ମୀରାଙ୍କର ପଥ ପ୍ରଦର୍ଶକ ହୋଇ ଆଗେ ଆଗେ ଚାଲିଲେ । ଏହିପରି ଶୀଘ୍ରରେ ମୀରା ବୃନ୍ଦାବନରେ ଉପନୀତା ହେଲେ । ତାଙ୍କର ଆଗମନରେ ବୃନ୍ଦାବନରେ କୃଷ୍ଣ ପ୍ରେମର ଲହରୀ ଉଚ୍ଛୁଳି ଉଠିଲା ।

କିଛିଦିନ ପରେ ବୃନ୍ଦାବନରୁ ଦ୍ୱାରକା ତୀର୍ଥକୁ ଗମନ କରି ମୀରା କୃଷ୍ଣଗୁଣ କୀର୍ତ୍ତନ କରିବାକୁ ଲାଗିଲେ । ଦ୍ୱାରକାର ଶ୍ରୀମନ୍ଦିରରେ କୃଷ୍ଣଙ୍କର ପ୍ରତିମା ଦର୍ଶନ କଲେ ମୀରା କୃଷ୍ଣ ପ୍ରେମରେ ବିହ୍ୱଳ ହୋଇ ନୟନର ଅଶ୍ରୁଦ୍ୱାରା ପ୍ରତିମାର ଚରଣ ଧୌତ କରି ଦେଲେ । କଥିତ ଅଛି ଏହି ସମୟରେ ପ୍ରତିମାଟି ଦୁଇ ଭାଗ ହୋଇଗଲା । ମୀରା ତନ୍ମଧ୍ୟରେ ଅନ୍ତର୍ହିତା ହୋଇଗଲେ । କେହି କେହି କହନ୍ତି ଶରୀରର ଗୋବିନ୍ଦଜୀଙ୍କ ସହିତ ମୀରା ଏହିପରି ଭାବରେ ମିଳିତ ହୋଇ ଯାଇଥିଲେ ।

ନାରୀ କୁଳରେ ଜନ୍ମ ହୋଇ ମୀରା ପତିଭକ୍ତି ଓ ଈଶ୍ୱର ପ୍ରେମର ଜ୍ୱଳନ୍ତ ଉଦାହରଣ ଦେଖାଇ ଯାଇଛନ୍ତି । ନାନକପନ୍ଥୀ ଏବଂ କବୀର ପନ୍ଥୀଙ୍କ ମତ ସହିତ ମୀରାଙ୍କ ମତର ଅନେକ ସାମଞ୍ଜସ୍ୟ ରହିଅଛି । ଏହି ସକଳ ସମ୍ପ୍ରଦାୟର ଗ୍ରନ୍ଥମାନଙ୍କରେ ମୀରାଙ୍କର ଅନେକ ପଦାବଳୀ ଦେଖାଯାଏ ।

# ଧାଈପାନ୍ନା

ବାବର ୧୫୨୬ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀର ଇବ୍ରାହିମ ଲୋଦୀଙ୍କୁ ପରାସ୍ତ କରି ଭାରତ ସିଂହାସନ ଅଧିକାର କଲେ । ଚିତୋରର ରାଣା ସଂଗ୍ରାମ୍ ସିଂହ ତାଙ୍କୁ ଭାରତରୁ ତଡ଼ି ଦେବେ ବୋଲି ଯୁଦ୍ଧ କଲେ । କିନ୍ତୁ ସେ ସିକ୍ରିଠାରେ ଯୁଦ୍ଧରେ ପରାସ୍ତ ହେଲେ । ଏହି ଯୁଦ୍ଧ ପରେ ସଂଗ୍ରାମଙ୍କର ଶିଶୁପୁତ୍ର ଉଦୟସିଂହ ଚିତୋର ସିଂହାସନରେ ଅଭିଷିକ୍ତ ହେଲେ । ତାଙ୍କ ପକ୍ଷରୁ ସଂଗ୍ରାମଙ୍କ ଭ୍ରାତୃଷ୍ପୁତ୍ର ବନବୀର ରାଜ୍ୟରକ୍ଷା କଲେ । ଉଦୟଙ୍କର ଲାଳନପାଳନ ଭାର ପାନ୍ନା ନାମ୍ନୀ ଏକ ଧାଈ ହସ୍ତରେ ଅର୍ପିତ ହୋଇଥିଲା । କ୍ଷମତାମୋହ ଲୋକକୁ ହିତାହିତ ଜ୍ଞାନଶୂନ୍ୟ କରି ପକାଏ । କିଛିଦିନ ରାଜକ୍ଷମତା ପରିଚାଳନ କରି ବନବୀର ଶିଶୁ ଉଦୟସିଂହଙ୍କୁ ବଧ କରି ସିଂହାସନର ଅଧିକାରୀ ହେବେ ବୋଲି ବ୍ୟାକୁଳ ହେଲେ ।

ଦିନେ ସାନ୍ଧ୍ୟ ଅନ୍ଧକାର ଭୁବନ ମୁଖକୁ ଅବଗୁଣ୍ଠିତ କରିବାର ଅଳ୍ପକ୍ଷଣ ପରେ ଚିତୋର ରାଜ ଅନ୍ତଃପୁରରେ ଏକ ଭୀଷଣ କୋଳାହଳ ଶୁଭିଲା । ପାନ୍ନା ଶୁଣିପାରିଲା, ବନବୀର ସଂଗ୍ରାମଙ୍କର ଅନ୍ୟତର ପୁତ୍ର ବିକ୍ରମାଜିତଙ୍କୁ ବଧ କରିଛନ୍ତି । ସେ ବନବୀରଙ୍କର ଦୁରଭିସନ୍ଧି ବୁଝିପାରି ଶୁପ୍ତ ଉଦୟସିଂହଙ୍କୁ ଏକ ପେଟିକା ମଧ୍ୟରେ ଶୁଆଇ ଜଣେ ବାରୁଜ ହସ୍ତରେ ଦୁର୍ଗବାହାରକୁ ପଠାଇ ଦେଲା । ସେ ଉଦୟ ସିଂହଙ୍କର ରତ୍ନନିର୍ମିତ ଦୋଳାରେ ନିଜର ଏକମାତ୍ର ନୟନମଣି ଶିଶୁପୁତ୍ରକୁ ଶୁଆଇଦେଇ ଉଦ୍‌ବେଗ ମନରେ ବନବୀରଙ୍କ ଆଗମନକୁ ପ୍ରତୀକ୍ଷା କଲା ।

ଦୁରାକାଙ୍କ୍ଷ ବନବୀର କ୍ଷମତା ମଦାନ୍ଧ ହୋଇ ବିକ୍ଷିପ୍ତ କୃତାନ୍ତ ବେଶରେ ପାନ୍ନାସନ୍ନିଧାନରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି ପାନ୍ନା କଦଳୀପତ୍ର ପରି ଥରିବାକୁ ଲାଗିଲା । ବନବୀର ପଚାରିଲେ "ଉଦୟ କାହିଁ ?" ସେ ଅଙ୍ଗୁଳି ନିର୍ଦ୍ଦେଶ କରି ଉଦୟଙ୍କ ଦୋଳାରେ ନିଜ ସୁପ୍ତ ଶିଶୁ ସନ୍ତାନକୁ ଦେଖାଇ ଦେଲା ।

ମନୁଷ୍ୟତା ଓ ବିବେକ ବୁଦ୍ଧି ସେତେବେଳେ ବନବୀରଙ୍କୁ ପରିତ୍ୟାଗ କରିଥିଲା । ସେ ଏକ ହିଂସ୍ର ଜନ୍ତୁରେ ପରିଣତ ହୋଇଥିଲେ । ଦୋଳିରେ ଶୟିତ ଶିଶୁ ପ୍ରକୃତରେ ଉଦୟସିଂହ କି ନୁହେଁ ଏ କଥା ପରୀକ୍ଷା ନିମନ୍ତେ ସେ ବିବେଚନା କରି ପାରିଲେ ନାହିଁ । କୃପାଣର ପ୍ରଚଣ୍ଡ ପ୍ରହାରରେ ସୁଖସୁପ୍ତ ନିରପରାଧ ଶିଶୁର ମସ୍ତକ ଛେଦନପୂର୍ବକ ଆତତାୟୀ ସିଂହାସନ ହସ୍ତଗତ କରିଛି ବୋଲି ମନେକରି ନିଜକକ୍ଷକୁ ପ୍ରତ୍ୟାବର୍ତ୍ତନ କଲା ।

ଏଣେ ପାନ୍ନାର ମାତୃହୃଦୟ କିଛିକ୍ଷଣ ନିସ୍ପନ୍ଦ ରହିଲା । ସ୍ୱୀୟ ସନ୍ତାନର ବଧ ସାଧନ କରାଇ ବୀରରମଣୀର ନେତ୍ରରୁ ଲୋତକ ଧାର ବହିଲା ନାହିଁ । ତା'ର ମାତୃହୃଦୟ ଆଜି ଦୁର୍ବଳତାର ଅନେକ ଊର୍ଦ୍ଧ୍ୱରେ । ଉଦୟସିଂହଙ୍କ ଜୀବନ ରକ୍ଷାଭାର ତା ହସ୍ତରେ ନିହିତ ! ରାଜଅନ୍ନରେ ପରିପାଳିତ ହୋଇ ଯଦି ରାଜମସ୍ତକ ରକ୍ଷା ନ କଲେ ସେହି କର୍ତ୍ତବ୍ୟରୁ ନିଷ୍କୃତି ମିଳିବ କିପରି ? ଉଦୟସିଂହ ବଞ୍ଚିଥିଲେ ଚିତୋର ରାଣାବଂଶର ରକ୍ଷା ହେବ, ଚିତୋରର ହୃତଗୌରବ ଫେରିଆସିବ । ଉଦୟ ସିଂହଙ୍କ ପ୍ରାଣରକ୍ଷା ନିମନ୍ତେ ନିଜ ପୁଅକୁ ବଳିଦେଇ ସେ କର୍ତ୍ତବ୍ୟ ମାତ୍ର ସମାପନ କରିଛି, କିନ୍ତୁ ସେହି କର୍ତ୍ତବ୍ୟ ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ହୋଇ ନାହିଁ । ଶୋକାବେଗ ଦେଖାଇବାର ବ୍ୟାକୁଳତା ପ୍ରକାଶ କରିବାର ସମୟ ଏହା ନୁହେଁ । କଠୋର

କର୍ତ୍ତବ୍ୟର ସମ୍ମୁଖରେ ହୃଦୟ ଦୌର୍ବଲ୍ୟ ନିରୋଧ କରିବାକୁ ହେବ । ହୃଦୟକୁ ବଜ୍ରପରି ଦୃଢ଼କରି ଧୀର ସ୍ଥିର ପଦବିକ୍ଷେପରେ ପାନ୍ନା ଦୁର୍ଗ ମଧ୍ୟରୁ ବହିର୍ଗତ ହେଲା । ଚତୁର୍ଦ୍ଦିଗରେ କୃଷ୍ଣ ଚତୁର୍ଦ୍ଦଶୀର ବିରାଟ ଅନ୍ଧକାର ହୃଦୟ ମଧ୍ୟରେ ନିରାଟ ବିଷାଦର କାଳିମା, ସମ୍ମୁଖରେ କଠୋର କର୍ତ୍ତବ୍ୟର ଉତ୍କଟରୂପ ।

ଦୁର୍ଗର ବହିର୍ଭାଗରେ ବାରିକ ପାନ୍ନାର ନିର୍ଦ୍ଦେଶ ଅନୁସାରେ ଅପେକ୍ଷା କରିଥିଲା । ଉଭୟେ ଉଦୟଙ୍କୁ ସଙ୍ଗରେ ନେଇ ସାମନ୍ତରାଜ୍ୟ କମଳମୀରକୁ ପ୍ରସ୍ଥାନ କଲେ । କମଳମୀରର ରାଜା ଆଶଶା ନିର୍ଦ୍ଦୟୀ ବନବୀରଙ୍କ କୁଟଦୃଷ୍ଟିରେ ପଡ଼ିବା ଭୟରେ ଉଦୟସିଂହଙ୍କୁ ଆଶ୍ରୟ ଦେବାକୁ ସମ୍ମତି ପ୍ରକାଶ କଲେ ନାହିଁ । ତାଙ୍କର ମାତା କହିଲେ, "ବତ୍ସ ! ତୁମେ ମେବାରର ସାମନ୍ତ, ଉଦୟସିଂହ ତୁମର ପ୍ରଭୁ । ତାଙ୍କୁ ରକ୍ଷା କରିବା ତୁମର କର୍ତ୍ତବ୍ୟ । କର୍ତ୍ତବ୍ୟ ପାଳନ କଲେ, ଭଗବାନ ସନ୍ତୁଷ୍ଟ ହୁଅନ୍ତି ଏବଂ ପ୍ରାଣୀର ମଙ୍ଗଳ କରନ୍ତି । ବୀରୋଚିତ ସାହସରେ କର୍ତ୍ତବ୍ୟ ପାଳନ କର ।" ଜନନୀଙ୍କ ଆଦେଶ ଶିରୋଧାର୍ଯ୍ୟ କରି ଆଶଶା ଶିଶୁରାଜାକୁ ଆଶ୍ରୟ ପ୍ରଦାନ କଲେ । ଧରା ପଡ଼ିବା ଭୟରେ ପାନ୍ନା ଓ ବାରିକ ଚିତୋରକୁ ପ୍ରତ୍ୟାବର୍ତ୍ତନ କଲେ ।

କାଳକ୍ରମେ ଉଦୟ ସିଂହଙ୍କର ବୟୋବୃଦ୍ଧି ଘଟିଲା । ଜନଶ୍ରୁତି ଶତକଣ୍ଠ ଧାରଣ କରି ତାଙ୍କର ବଞ୍ଚିଥିବା ବାର୍ତ୍ତା ଚତୁର୍ଦ୍ଦିଗରେ ପ୍ରଚାର କଲା । ଆନନ୍ଦରେ ଅଧୀର ହୋଇ ସାମନ୍ତ ତଥା ପ୍ରଜା କୁଳ ନରହନ୍ତା ପାପିଷ୍ଠ ବନବୀରଙ୍କୁ ରାଜ୍ୟରୁ ବିତାଡ଼ିତ କଲେ । ୧୫୬୭ ଖ୍ରୀଷ୍ଟାବ୍ଦରେ ମୋଗଲ ସମ୍ରାଟ ଅକବର ଚିତୋର ଆକ୍ରମଣ କଲେ । ଏଥି ଉଦୟସିଂହଙ୍କ ସାଙ୍ଗ ତାଙ୍କୁ ଯୁଦ୍ଧ କରିବାକୁ

ଘଢ଼ଲ । ତାଙ୍କ ଔରସରେ ହିଁ ପୃଥିବୀ ଇତିହାସରେ ସୁବିଖ୍ୟାତ ନାମା ରାଣା ପ୍ରତାପସିଂହ ଜନ୍ମଗ୍ରହଣ କରିଥିଲେ ।

ଜଣେ ସାମାନ୍ୟ ପରିଚାରିକା ପାନ୍ନାର କି ଉଚ୍ଚ କର୍ତ୍ତବ୍ୟ ଜ୍ଞାନ ଓ ଦେଶ ଭକ୍ତି । ତାହାର ସାହସ ଓ ତ୍ୟାଗରେ ହିଁ ମେବାର ରାଜବଂଶର ରକ୍ଷା ହେଲା । ଭାରତ ଇତିହାସରେ ତାହାର ଆସନ କେତେ ଉଚ୍ଚରେ ! ଏପରି ରମଣୀ ପୃଥିବୀରେ କେତେ ଜଣ ?



# ପଦ୍ମିନୀ

ପୂର୍ବକାଳରେ ଆମ ଦେଶରେ ରାଜପୁତମାନେ ଅତ୍ୟନ୍ତ ବୀର ଥିଲେ । ତେଣୁ ଶତ୍ରୁମାନେ ସହଜରେ ରାଜପୁତ ଶାସିତ ରାଜ୍ୟରେ ହଠାତ୍ ପ୍ରବେଶ କରି ପାରୁ ନ ଥିଲେ । ରାଜପୁତ ରାଜାମାନେ ପ୍ରାୟ ସମସ୍ତେ ଅସାଧାରଣ ବୀର ଓ ରଣ ବିଶାରଦ ଥିଲେ । କୌଣସି ରାଜାଙ୍କୁ ଦୁର୍ବଳ ଦେଖିଲେ ଶତ୍ରୁମାନେ ରାଜ୍ୟ ଆକ୍ରମଣ କରିବାକୁ ସାହସୀ ହେଉଥିଲେ । ରାଜପୁତନା ଅନ୍ତର୍ଗତ ମିବର ରାଜ୍ୟରେ ଯେତେବେଳେ ଲକ୍ଷ୍ମଣ ସିଂହ ରାଣା ହେଲେ, (୧୩୭୫ ଖ୍ରୀଃ) ସେହି ସମୟରେ ବିଧର୍ମୀ ଯବନମାନେ ବହୁଥର ଭାରତ ଆକ୍ରମଣ କରିଥିଲେ । ରାଣା ଲକ୍ଷ୍ମଣ ସିଂହ ବାଳକ ଥିବାରୁ ତାହାଙ୍କ ପିତୃବ୍ୟ ଭୀମ ସିଂହ ରାଜା ରୂପେ ସମସ୍ତ ରାଜ କାର୍ଯ୍ୟ ନିର୍ବାହ କରୁଥିଲେ । ପଦ୍ମିନୀନାମ୍ନୀ ସର୍ବାଙ୍ଗସୁନ୍ଦରୀ କ୍ଷତ୍ରିୟ କନ୍ୟାଙ୍କ ସହିତ ଲକ୍ଷ୍ମଣ ସିଂହଙ୍କର ବିବାହ ହୋଇଥିଲା । ପଦ୍ମର ସୌରଭ ପରି ପଦ୍ମିନୀଙ୍କର ରୂପ

ଲାବଣ୍ୟର ପ୍ରଶଂସା ଦିଗ୍‌ଦିଗନ୍ତ ବିସ୍ତାରିତ ହୋଇଥିଲା । ରୂପ ଗୁଣରେ ସେ ରମଣୀ ସମାଜର ଶିରୋମଣି ଥିଲେ । କ୍ରମେ ଜନ-ଶ୍ରୁତିରେ ଏ ସମ୍ବାଦ ଯବନପତି ଅଲ୍ଲାଉଦ୍ଦୀନଙ୍କର କର୍ଣ୍ଣଗୋଚର ହୁଅନ୍ତେ ସେ ନାରୀରତ୍ନକୁ ଲାଭ କରିବା ପାଇଁ ବ୍ୟାକୁଳ ହେଲେ । ରାଜ୍ୟ ଅଧିକାର ଇଚ୍ଛା ତାଙ୍କ ହୃଦୟରେ ନ ଥିଲେ ସୁଦ୍ଧା କେବଳ ପଦ୍ମିନୀଙ୍କୁ ପାଇବା ଆଶାରେ ଆସି ହଠାତ୍ ଚିତୋର ଆକ୍ରମଣ କଲେ । ବହୁ ସୈନ୍ୟ ଦ୍ୱାରା ଦୁର୍ଗର ସମସ୍ତ ଦ୍ୱାର ଅବରୋଧ କଲେ । ମାତ୍ର ସେଥିରେ କୌଣସି ଫଳ ନ ହେବାରୁ ସେ ଧୂର୍ତ୍ତମତି ଶେଷରେ ଏହା ପ୍ରଚାର କରାଇ ଦେଲେ ଯେ, "ମୁଁ ପଦ୍ମିନୀଙ୍କୁ ପାଇଲେ କେବଳ ଏ ରାଜ୍ୟ କାହିଁକି ଭାରତ ଛାଡ଼ି ସ୍ୱଦେଶକୁ ଫେରିଯିବି ।"

ରୂପ ଯୌବନ ଅନର୍ଥର ହେତୁ । ରୂପବତୀ ନାରୀ ଯୋଗେ ଏ ଜଗତରେ କେତେ କେତେ ଅତ୍ୟାଚାର ଓ ନରହତ୍ୟା ହୋଇ ଯାଇଅଛି । ରୂପ ମୋହରେ ପଡ଼ି କାହାରି କେଉଁ କାଳରେ ମଙ୍ଗଳ ହୋଇ ନାହିଁ । ସତୀତ୍ୱ ହରଣ କରିବାକୁ ଯାଇ କେତେ ବଂଶ ନିର୍ମୂଳ ଓ କେତେ ରାଜ୍ୟ ଛାରଖାର ହୋଇଅଛି । ଏ ଦେଶର ଆର୍ଯ୍ୟ ରମଣୀମାନେ ଆପଣାର ସତୀତ୍ୱକୁ ମହାଧନ ମନେ କରି ପ୍ରାଣପଣେ ତାହା ରକ୍ଷା କରୁଥିଲେ । ପ୍ରାଣ ବିସର୍ଜନ ଅପେକ୍ଷା ଧର୍ମରକ୍ଷାକୁ ବଡ଼ କରି ମାନୁଥିଲେ ବୋଲି ଯୁଦ୍ଧ ସମୟରେ ସ୍ୱାମୀଙ୍କର ଜୟ ଆଶା ନ ଦେଖିଲେ ଶତ୍ରୁ ହସ୍ତରେ ଆପଣାର ସତୀତ୍ୱ ନଷ୍ଟ ହେବା ଆଶଙ୍କାରେ ଦଳେ ଦଳେ ଯାଇ ଅନଳ କୁଣ୍ଡରେ ନିଜକୁ ବିସର୍ଜନ କରୁଥିଲେ । ରାଜପୁତମାନେ ଏଥି ନାରୀର ମର୍ଯ୍ୟାଦା ଉତ୍ତମ ରୂପେ ବୁଝୁଥିବାରୁ ସେ ରତ୍ନକୁ ଯତ୍ନରେ ରକ୍ଷା କରିବା ପାଇଁ ସର୍ବଦା ସାବଧାନ ଥିଲେ । ବିଧର୍ମୀ ଅଲ୍ଲାଉଦ୍ଦୀନଙ୍କର କଥା ଶୁଣି ରାଜପୁତ ବୀରମାନେ ଉତ୍ତେଜିତ ହୋଇ ଉଠିଲେ । ଆପଣାର ଅଙ୍କଲକ୍ଷ୍ମୀ ଅଙ୍କରୁ ବହିଷ୍କୃତ ହୋଇ

ଅନ୍ୟର ଅଙ୍କମଣ୍ଡନ କରିବ । ଏହା ରାଜପୁତ ବୀର ତ ଦୂରର କଥା କେହିଁ ପାଷାଣ୍ଡ ସ୍ୱୀକାର କରିବ ? ରୂପ ଲୋଲୁପ ଆଲ୍ଲାଉଦ୍ଦୀନ ନଜର ଅଣପ୍ରାନବଣ ହେବାର ସମ୍ଭାବନା ନ ଦେଖି ଶେଷରେ ଏକ୍ରପର ଜଣାଇଲେ । (ମୋ) ଅଭିକରୁ ଅବକାଶ ନାହିଁ । ଥରେ ସେ ଭୁବନ ମୋହିନୀର ରୂପ ଦେଖି ପାରିଲେ ସ୍ୱଦେଶକୁ ଫେରିଯିବ । ବୀର ଭୀମସିଂହ ପ୍ରଥମେ ଏଥିରେ ସମ୍ମତି ପ୍ରକାଶ କରି ପାରିଲେ ନାହିଁ । ସ୍ୱୟଂ ପଦ୍ମା ଦେବୀଙ୍କ ମୁଖରୁ ଏ କଥା ଶୁଣି କହିଲେ—'ମୋହର



ରୂପ ଯିନା ଚିତୋରକୁ କାଳ ହେଲା । ଯଦି ମୋର ଲାଗି ଚିତୋର ରକ୍ଷା ହେବ । ଯଦି ମୋ ରୂପ ଦର୍ଶନରେ ଶତ୍ରୁ ନିରସ୍ତ ହୁଏ,

ତା ହେଲେ କ୍ଷତି କଣ ? କିନ୍ତୁ ମୁଁ ତାଙ୍କ ସମ୍ମୁଖକୁ ଯାଇ ପାରିବି ନାହିଁ । ଦର୍ପଣ ଅନ୍ତରାଳରେ ସେ ମୋର ରୂପ ଦେଖି ପାରିବେ । ଏହି ସମ୍ବାଦ ତାଙ୍କ ନିକଟକୁ ପଠାଅ ।" ରାଣା ଭୀମ ସିଂହ ଏଥିରେ ସମ୍ମତ ହୋଇ ଶତ୍ରୁ ଶିବିରକୁ ଏହି ସମ୍ବାଦ ପ୍ରେରଣ କଲେ । ଏହି ଶ୍ରବଣରେ ଅଲ୍ଲାଉଦ୍ଦିନଙ୍କର ଆନନ୍ଦର ସୀମା ରହିଲା ନାହିଁ । ଭୀମସିଂହଙ୍କ ନିମନ୍ତ୍ରଣ ଅନୁସାରେ ସେ ଅତ୍ୟଳ୍ପ କେତେକ ଭୃତ୍ୟ ସହିତ ରାଜପୁରରେ ଉପସ୍ଥିତ ହେଲେ । ଅଲ୍ଲାଉଦ୍ଦୀନ ଯେତେ ଶତ୍ରୁ ହୁଅନ୍ତୁ ନା କେବେ ବର୍ତ୍ତମାନ ରାଣାଙ୍କର ଗୃହାଗତ ଅତିଥି । ରାଜପୁତ-ମାନେ ଅତିଥିଙ୍କ ବିଶେଷ ସମ୍ମାନ କରିବା ପୁଣ୍ୟ ବୋଲି ଜାଣିଥିଲେ । ତେଣୁ ଭୀମସିଂହ ପରମ ସମାଦରରେ ତାହାଙ୍କୁ ପୁର ମଧ୍ୟକୁ ନେଇ ଯାଇ ଦର୍ପଣରେ ସହଧର୍ମିଣୀ ପଦ୍ମିନୀଙ୍କର ପ୍ରତିବିମ୍ବ ଦେଖାଇଲେ । ସେ ରୂପଦର୍ଶନରେ ଅଲ୍ଲାଉଦ୍ଦୀନଙ୍କର ପିପାସା ନିବୃତ୍ତ ହେବା ତେଣିକି ଥାଉ ଘୃତ ଆହୁତିରେ ଅଗ୍ନିର ଶିଖା ପରି ଅଧିକ ବର୍ଦ୍ଧିତ ହେଲା । ସେହି ମୁହୂର୍ତ୍ତରେ ଯଦି ବା ସେ ବାଧ୍ୟ ହୋଇ ପ୍ରତି ନିବୃତ୍ତ ହେଲେ, ମାତ୍ର ପଦ୍ମିନୀଙ୍କୁ ପାଇବାର ଆଶା ତାଙ୍କ ଅନ୍ତରରେ ପ୍ରବଳ ହେବାକୁ ଲାଗିଲା । ପୁରରୁ ବାହାରି ଯିବା ସମୟରେ ଭୀମ ସିଂହ ଶତ୍ରୁର ମାୟା ବୁଝି ନ ପାରି ଶିଷ୍ଟତା ଅନୁରୋଧରେ କିଛି ଦୂର ବଳାଇ ଦେବାକୁ ଗଲେ । ମାତ୍ର କପଟୀ ଅଲ୍ଲାଉଦ୍ଦୀନ ତାଙ୍କୁ ଏକାକୀ ଦେଖି ପଥ ମଧ୍ୟରେ ଗୁପ୍ତ ସ୍ଥାନରେ ଲୁକ୍କାୟିତ ଭୃତ୍ୟମାନଙ୍କ ଦ୍ୱାରା ବନ୍ଦୀ କରାଇ ସ୍ୱଶିବିରକୁ ନେଇ ଗଲେ । ଏବଂ ନଗର ମଧ୍ୟରେ ଏହି ଆଦେଶ ପ୍ରଚାର କରାଇ ଦେଲେ ଯେ, ପଦ୍ମିନୀଙ୍କୁ ନ ପାଇଲେ ରାଣାଙ୍କର ମୁକ୍ତି ନାହିଁ ।

ସମସ୍ତ ଚିତୋର ବାସୀ ଏ ସନ୍ଦେଶ ଶ୍ରବଣ କରି ଅତ୍ୟନ୍ତ ବ୍ୟଥା ଅନୁଭବ କଲେ । ଏହି ନିଷ୍ଠୁର ଆଦେଶ ରାଣୀଙ୍କୁ ଶୁଣାଇବା

ପାଇଁ କେହି ସାହସ କଲେ ନାହିଁ । ମାତ୍ର ବୀରାଙ୍ଗନା ପଦ୍ମା ଏ ବାର୍ତ୍ତା ପାଇ ବହୁ ଚିନ୍ତା ପରେ ଶତ୍ରୁ ପ୍ରତି 'ଶଠେ ଶାଠ୍ୟଂ ସମାଚରେତ୍' ନୀତି ଅବଲମ୍ବନୀୟ ବୋଲି ମନେ ମନେ ସ୍ଥିରକରି ପ୍ରକାଶ କଲେ ଯେ, "ପ୍ରଜାଙ୍କର ରକ୍ଷା ଲାଗି ମୁଁ ଯବନ ଶତ୍ରୁ ହସ୍ତରେ ଆତ୍ମ ସମର୍ପଣ କରିବାକୁ ପ୍ରସ୍ତୁତ ଅଛି ।" ଏହା କହି ରାଣୀ ପ୍ରାସାଦର ଗୋଟିଏ ନିଭୃତ କକ୍ଷରେ ପିତୃବଂଶୀୟ 'ଗୋରା' ଓ 'ବାଦଲ' ନାମକ ଦୁଇଜଣ ବିଶ୍ୱସ୍ତ ବୀରଙ୍କ ସହ କିଛିକ୍ଷଣ ପରାମର୍ଶ କରି ଶତ୍ରୁ ଶିବିରକୁ ଏ ସମ୍ବାଦ ପଠାଇଲେ—"ମୁଁ ରାଜବଂଶର କନ୍ୟା, ବର୍ତ୍ତମାନ ମିବାରର ରାଜ ମହିଷୀ । ସମ୍ରାଟଙ୍କ ଶିବିରକୁ ଯାତ୍ରା କରିବାକୁ ହେଲେ ମୋତେ ସେହିପରି ସମ୍ମାନ ଓ ଆଡମ୍ବରରେ ଯିବାକୁ ହେବ । ମୋ ସଙ୍ଗରେ ଅନେକ ଦାସ ପରିଜନ ଯିବେ । ପୁଣି ଯେଉଁ ରାଜପୁତ ରମଣୀମାନେ କେବେ ସୂର୍ଯ୍ୟ ଚକ୍ଷୁରେ ଦେଖନ୍ତି । ସେମାନେ ସମସ୍ତେ ଶିବିରପର୍ଯ୍ୟନ୍ତ ଅନୁଗାମିନୀ ହେବେ । ସେମାନେ ସମ୍ଭ୍ରାନ୍ତ ମହିଳା । ସେମାନଙ୍କ ସମ୍ମାନ ରକ୍ଷାନିମନ୍ତେ କେବେହେଁ ତ୍ରୁଟି ନ ହୁଏ । କୌଣସି ଯବନ ସୈନ୍ୟ ତାଙ୍କ ଶିବିକା ନିକଟରେ ଦଣ୍ଡାୟମାନ ସୁଦ୍ଧା ହୋଇ ପାରିବେ ନାହିଁ ଶିବିରଠାରେ ଉପସ୍ଥିତ ହେବା ସମୟରେ କୌଣସି ସୈନିକ ଯେପରି ସେଠାରେ ନ ଥାଆନ୍ତି । ଶିବିରରେ ଆତ୍ମ ସମର୍ପଣ କରିବା ପୂର୍ବରୁ ଚିର ବିଦାୟ ଗ୍ରହଣ କରିବା ନିମନ୍ତେ ନିଭୃତ ସ୍ଥାନରେ ପ୍ରାଣପତି ଭୀମସିଂହଙ୍କ ସହିତ କିଛିକ୍ଷଣ ସାକ୍ଷାତ୍କାର ଆବଶ୍ୟକ । ଏ ସମସ୍ତ ନିୟମ ପାଳନ କରିବାକୁ ସତ୍ୟବଦ୍ଧ ହେଲେ ମୁଁ ଅକୁଣ୍ଠିତ ଚିତ୍ତରେ ଯାତ୍ରା କରିବି ।" ଅଲ୍ଲାଉଦ୍ଦୀନ ଏ ସମ୍ବାଦ ପାଇ ଆନନ୍ଦରେ ଉନ୍ମତ୍ତ ହୋଇ ପଡ଼ିଲେ । ଏବଂ ଅବିଳମ୍ବେ ଶିବିରରୁ ସମସ୍ତ ସୈନିକଙ୍କୁ ଦୂରକୁ ଚାଲି ଯିବାକୁ ଆଦେଶ ଦେଇ ପଦ୍ମାଙ୍କୁ ପାଇବା ପାଇଁ ମୁହୂର୍ତ୍ତ ଗଣନା କରିବାକୁ ଲାଗିଲେ । ନିର୍ଦ୍ଦିଷ୍ଟ ସମୟରେ

ଆଲ୍ଲାଉଦ୍ଦୀନଙ୍କ ଶିବିରରେ ଗୋଟି ଗୋଟି ହୋଇ ସାତ ଶ' ଶିବିକା ସ୍ଥାପିତ ହେଲା । ପ୍ରତ୍ୟେକରେ ଗୁପ୍ତ ଅସ୍ତ୍ରଧାରୀ ଛଅ ଛଅ ଜଣ ରାଜପୁତ ସାଝି ବାହକ ଥିଲେ ଏବଂ ଅସ୍ତ୍ର ଶସ୍ତ୍ର ସହିତ ଜଣେ ମହାବୀର ଆରୋହୀ ଥିଲେ । ପଦ୍ମାଙ୍କ ଶୁଭାଗମନରେ ଆଲ୍ଲାଉଦ୍ଦୀନଙ୍କ ହୃଦୟ ପ୍ରେମ ରସରେ ଉଦ୍ବେଳିତ ହେବାକୁ ଲାଗିଲା । ସେ ତତ୍କ୍ଷଣାତ୍ ଭୀମ ସିଂହଙ୍କୁ ପ୍ରିୟତମାଙ୍କ ସହିତ ସାକ୍ଷାତ୍କାର ନିମିତ୍ତ ଅର୍ଦ୍ଧଘଣ୍ଟା ସମୟ ଅନୁମତି ଦେଲେ ।

ଯବନ ପତିଙ୍କ ଆଦେଶ କ୍ରମେ ଭୀମସିଂହ ପଦ୍ମାଙ୍କ ଶିବିକା ନିକଟରେ ଉପସ୍ଥିତ ହୁଅନ୍ତେ ଆଉ ଖଣ୍ଡେ ଶିବିକା ପାଖକୁ ରଖାଗଲା କ୍ଷଣକ ପରେ ସେହି ଦୁଇଖଣ୍ଡ ଶିବିକା ବାହକ ସ୍କନ୍ଧରେ ବାହିତ ହୋଇ ଦୂରକୁ ଚାଲିଗଲା । ପଛେ ପଛେ କେତେ ଖଣ୍ଡି ଶିବିକା ଚିତୋର ଅଭିମୁଖେ ଯିବାର ଦେଖି ଆଲ୍ଲାଉଦ୍ଦୀନ ମନେ କଲେ, ସମ୍ଭବତଃ ଯେଉଁ ସମ୍ଭ୍ରାନ୍ତ ମହିଳାମାନେ ପଦ୍ମାଙ୍କୁ ବିଦାୟ ଦେବାକୁ ଆସିଥିଲେ ସେହି ମାନେ ଫେରି ଯାଉଅଛନ୍ତି । ମାତ୍ର ପରମୁହୂର୍ତ୍ତରେ କୌଣସି ପ୍ରକାର ସୋର ଶବ୍ଦ ନ ପାଇ ତାଙ୍କର ଉତ୍କଣ୍ଠା ବଢ଼ିବାକୁ ଲାଗିଲା । ଅର୍ଦ୍ଧଘଣ୍ଟା ଅତୀତ ହେଲା ପରେ ସୁଦ୍ଧା ଭୀମସିଂହଙ୍କୁ ପ୍ରିୟତମାଙ୍କ ପାଖରୁ ନିବୃତ୍ତ ନ ହେବାର ଦେଖି ଆଲ୍ଲାଉଦ୍ଦୀନଙ୍କ ମନରେ ଈର୍ଷା ଓ ସନ୍ଦେହ ଯୁଗପତ୍ ଉପସ୍ଥିତ ହେଲା । ସେ ଆଉ ଅପେକ୍ଷା କରି ନ ପାରି ଶିବିକାର ପଟାବରଣ ଉଠାଇ ଦେବାକୁ ଆଦେଶ ଦେଲେ । ତତ୍କ୍ଷଣାତ୍ ଦେଖାଗଲା ଭୀମସିଂହ ଓ ପଦ୍ମାଙ୍କ ପରିବର୍ତ୍ତେ ଜଣେ ଜଣେ ଅସ୍ତ୍ରଧାରୀ ରାଜପୁତ ବୀର ଶିବିକା ଭିତରୁ ବାହାରି ଆସୁଛନ୍ତି । ଏ ଦୃଶ୍ୟ ଦେଖି ଆଲ୍ଲାଉଦ୍ଦୀନଙ୍କ ହୃଦୟ କ୍ରୋଧରେ ପ୍ରଜ୍ୱଳିତ ହୋଇ ଉଠିଲା । ସେ କାଳ ବିଳମ୍ବ ନ କରି ଅଦୂରବର୍ତ୍ତୀ ଶିବିରରୁ ସମସ୍ତ ସୈନିକଙ୍କୁ ଯୁଦ୍ଧାର୍ଥ ଆହ୍ୱାନ କଲେ ଏବଂ ଭୀମସିଂହଙ୍କୁ

ପଥରେ ଧରିବା ପାଇଁ ବହେ ସୈନ୍ୟ ପଠାଇ ଦେଲେ । ମାତ୍ର ବୃଥା ଚେଷ୍ଟା—ପଥ ମଧ୍ୟରେ ଭୀମ ସିଂହ ଶିବିକାରୁ ବାହାରି ଗୋଟିଏ ଦ୍ରୁତଗାମୀ ଅଶ୍ୱ ପୃଷ୍ଠରେ ବସି ଖର ବେଗରେ ତାହାର ଦୁର୍ଗରେ ପ୍ରବେଶ କଲେ । ଏଣେ ଦୁଇପକ୍ଷ ମଧ୍ୟରେ ଘୋର ଯୁଦ୍ଧ ହେଲା । ରାଜପୁତ ବୀରମାନେ ଆଶା ସଫଳ ହୋଇଥିବାର ଜାଣି ଦ୍ୱିଗୁଣ ଉତ୍ସାହରେ ଯୁଦ୍ଧ କରିବାକୁ ଲାଗିଲେ । ପୂର୍ବୋକ୍ତ ଗୋରା ଏବଂ ଦ୍ୱାଦଶ ବର୍ଷୀୟ ବାଳକ ବାଦଲ ବୀରମଣ୍ଡଳରେ ଅଗ୍ରଣୀ ହୋଇ ପଡ଼ିଲେ । ରାଜପୁତ ବୀରମାନେ ସଂଖ୍ୟାରେ ଅଳ୍ପ ଥିବାରୁ ଶେଷରେ ସମ୍ମୁଖ ସମରରେ ପ୍ରାଣତ୍ୟାଗ କଲେ ଏବଂ ମହାବୀର ଗୋରା ଏହି ରଣରେ ପ୍ରାଣ ବିସର୍ଜନ କଲେ ସତ୍ୟ; କିନ୍ତୁ ସେ ବିକ୍ରମ ପ୍ରଦର୍ଶନ କରି ନ ଥିଲେ ପଦ୍ମିନୀ ଭୀମସିଂହଙ୍କର ଉଦ୍ଧାର ହୋଇପାରି ନ ଥାନ୍ତା । ବାଳକ ବାଦଲ ତାହାର ଦୁର୍ଗରେ ଉପସ୍ଥିତ ହୁଅନ୍ତେ ତାହାଙ୍କ ପିତୃବ୍ୟ ପତ୍ନୀ ଶୋକ ମଳିନ ମୁଖରେ ସମ୍ମୁଖକୁ ଆସି ପଚାରିଲେ ବତ୍ସ ! ମୁଁ ପ୍ରାଣ ପତିଙ୍କର ମହାପ୍ରସ୍ଥାନ ବାର୍ତ୍ତା ପାଇଅଛି । ମୁଁ ସଙ୍ଗେ ସଙ୍ଗେ ରାଜପୁତ ରମଣୀର ବ୍ରତ ପାଳନ କରି ପାଆନ୍ତି । କେବଳ ତୁମ୍ଭ ମୁଖରୁ ଥରେ ଯୁଦ୍ଧ ସମ୍ବାଦ ଶୁଣିବାକୁ ଇଚ୍ଛା କରୁଅଛି ।" ବୀର ବାଳକ ବାଦଲ ଅଶ୍ରୁପୂର୍ଣ୍ଣ ନୟନରେ କହିବାକୁ ଲାଗିଲେ, "ମା, ମୋହର ପିତୃବ୍ୟଙ୍କର ବୀରତ୍ୱ କଥା କଣ କହିବି । ମହାବୀର ଗୋରା ଯେ ବୀରତ୍ୱ ଦେଖାଇ ଅଛନ୍ତି ତାହା ଦେଖି ବିପକ୍ଷ ମାନେ ମଧ୍ୟ ଧନ୍ୟ ଧନ୍ୟ କହୁଛନ୍ତି । ଶତ ଶତ ଶତ୍ରୁ ମୁଣ୍ଡ ଖଣ୍ଡ ଖଣ୍ଡା ଘାତରେ ଛିଣ୍ଡାଇ ପିତୃବ୍ୟ ମୋହର ପୁଣି ବୀର ମର୍ଯ୍ୟାଦାରେ ଗୋଟିଏ ଯବନ [illegible] ଶବ ଉପରେ ମସ୍ତକ ରଖି ଚିର ନିଦ୍ରା ଭଜି ଅଛନ୍ତି । ବାଳକ ମୁଖରୁ ଏହି କଥା ଶୁଣି ବୀର ରମଣୀ ସ୍ନେହରେ ତାହାର ମୁଖ ଚୁମ୍ବନ କଲେ ଏବଂ ଅବିଳମ୍ବରେ ଚିତାନଳରେ ପ୍ରବେଶ

କରି ସେମାନଙ୍କର ଅନୁଗାମିନୀ ହେଲେ । ଧନ୍ୟ ରାଜପୁତ ଜାତି । ଧନ୍ୟ ରାଜପୁତ ରମଣୀର ହୃଦୟ ।

ଏଣେ ଯବନ ସମ୍ରାଟ ଅଲ୍ଲାଉଦ୍ଦୀନ ଏହିରୂପେ ପ୍ରତାରିତ ଏବଂ ହତାଶ ହୋଇ ଅଧିକତର ଈର୍ଷା ଓ କ୍ରୋଧ ପୋଷଣ କଲେ । ତାହାର ଫଳରେ ଚିତୋରରେ ପୁଣି ହିନ୍ଦୁ ମୁସଲମାନଙ୍କର ଦୀର୍ଘକାଳ ବ୍ୟାପୀ ଯୁଦ୍ଧ ହେଲା । ଶତ ଶତ ରାଜପୁତ ବୀର ସମ୍ମୁଖ ସମରରେ ପ୍ରତ୍ୟହ ଧରାଶାୟୀ ହେବାକୁ ଲାଗିଲେ । ପତି-ପୁତ୍ର ଶୋକାତୁରା ରମଣୀମାନଙ୍କର ବିଳାପ ଧ୍ୱନିରେ ଚିତୋରର ଗଗନ ପୂର୍ଣ୍ଣ ହୋଇ ରାଜାରାଣୀଙ୍କର ହୃଦୟ ବିଦାରଣ କଲା । ତଥାପି ରାଜପୁତ ମାନେ ଯୁଦ୍ଧ ଉତ୍ସାହ ଛାଡ଼ି ପାରିଲେ ନାହିଁ । ଶେଷରେ ଚିତୋର ବୀରଶୂନ୍ୟ ହୋଇ ପଡ଼ିଲା । ରାଜପୁତ ରମଣୀମାନେ ଅନାଥା ହେବାରୁ ଧର୍ମ ରକ୍ଷାର ଉପାୟ ନ ଦେଖି ଜହର ବ୍ରତ ଅନୁଷ୍ଠାନ କରିବାକୁ ଉଦ୍ୟତା ହେଲେ । ସ୍ୱୟଂ ଭୁବନ ମୋହିନୀ ରାଜମହିଷୀ ପଦ୍ମିନୀ ସେହି ହତ ପୁତ୍ର ବନ୍ଧୁ ରମଣୀମାନଙ୍କର ଅଗ୍ରଗାମିନୀ ହୋଇ କହିଲେ— "ସମବେତ ସଖୀଗଣ ! ଆମ୍ଭମାନଙ୍କର ପତି, ପୁତ୍ର ଭ୍ରାତା ଅନେକ ସମ୍ମୁଖ ସମରରେ ପ୍ରାଣ ବିସର୍ଜନ କରି ନିଜ ମାନ ରକ୍ଷା କରିଅଛନ୍ତି । ବର୍ତ୍ତମାନ ଆମ୍ଭମାନଙ୍କର ସମ୍ମାନ ରକ୍ଷା ଆମ୍ଭ ହାତରେ । ରାଜପୁତ ନାରୀ ମରଣକୁ ଭୟ କରେ ? ଧର୍ମ ଆମର ଜୀବନଠାରୁ ବଡ଼ ଅଗ୍ନିକୁଣ୍ଡରେ ଦେହ ବିସର୍ଜନ ହିଁ ଆମ୍ଭମାନଙ୍କ ଧର୍ମରକ୍ଷାର ଏକ ମାତ୍ର ଉପାୟ । ଦେଖ, ରାଜପୁତ ପୁରୁଷମାନେ ସହାସ୍ୟ ବଦନରେ ଦେହତ୍ୟାଗ କରୁଅଛନ୍ତି । ଆମ୍ଭେମାନେ ଆଜ ପ୍ରସନ୍ନ ମନରେ ତାହା କରିବା । ଯବନ ପତି ଚିତୋରରେ ପଶି ବୁଝୁ, ଯେ ତାହାର ପୈଶାଚ ପ୍ରବୃତ୍ତି ଅପେକ୍ଷା ଆମ୍ଭମାନଙ୍କର ଧର୍ମ ପ୍ରବୃତ୍ତି କେତେ ଉଚ୍ଚ ।"

"ଏହା କହି ପଦ୍ମିନୀ ସୁଡ଼ଙ୍ଗ ଅଗ୍ନି ମୁଖରେ ଅଗ୍ରସର ହେଲେ ଏବଂ

ଅନେକ ରମଣୀ ତାଙ୍କର ଅନୁଗାମିନୀ ହେଲେ । ଅନ୍ତଃପୁର ସ୍ଥିତ ସୁଡଙ୍ଗ ଦ୍ୱାରର ଲୌହ କବାଟ ଫିଟିଗଲା । ଶତ ଶତ ରାଜପୁତ ରମଣୀ ରକ୍ତବସ୍ତ୍ର ପରିଧାନ କରି ମୁକ୍ତ କେଶରେ ତାହା ମଧ୍ୟରେ ପ୍ରବେଶ କଲେ । ତତ୍ପରେ ଯାହା ଘଟିଲା, ତାହା ପ୍ରକାଶ କରିବାକୁ ଲେଖନୀ ସଙ୍କୁଚିତ । ସେ ଘଟଣା ସ୍ମରଣ କଲେ କାହାର ହୃଦୟ କମ୍ପିତ ଏବଂ ସ୍ତମ୍ଭିତ ନ ହେବ । ଅଲ୍ଲାଉଦ୍ଦୀନ ଜୟୀ ହୋଇ ରାଜପୁତ ରମଣୀଙ୍କ ଚିତାଧୂମରେ ଆଚ୍ଛାଦିତ ଚିତୋର ଦୁର୍ଗରେ ପ୍ରବେଶ କରିଥିଲେ ସତ୍ୟ, ମାତ୍ର ଶାନ୍ତିଲାଭ କରି ପାରି ନ ଥିଲେ । ସାଙ୍ଗନା ଦେବୀଙ୍କର ଅଦ୍ଭୁତ କର୍ମ ତାହାକୁ ଯେଉଁ ଅମୂଲ୍ୟ ଶିକ୍ଷା ଦେଇଥିଲା, ତାହା ସମସ୍ତ ଜୀବନ ମଧ୍ୟରେ ଭୁଲିବାର ନୁହେଁ ।

— ୦ —